# ସରଳ କର

## ଗଳ୍ପ ସଂକଳନ

ଲେଖକ/ପ୍ରକାଶକ - ସଦୀପ୍ତ ମିଶ୍ର
୧୦୪, ଷ୍ଟେସନ ଏରିଆ, ୟୁନିଟ୍-୩

ମୁଦ୍ରଣ- ମିଶ୍ର ପ୍ରିଣ୍ଟର୍ସ
୧୦୪, ଷ୍ଟେସନ ଏରିଆ, ୟୁନିଟ୍-୩
ଭୁବନେଶ୍ୱର-୭୫୧୦୦୧

ପ୍ରଚ୍ଛଦ - ରବିନ୍ଦ୍ରନ୍ ଏମ୍. କେ.
ସରକାରୀ ହାଇସ୍କୁଲ ତ୍ରିସିଲେରୀ
ପୋ : ତ୍ରିସିଲେରୀ
କାର୍ତ୍ତିକୁଲମ
ୱାୟାନାଡ୍, କେରଳ

ମୂଲ୍ୟ / ଡିଲକ୍ସ ୧୮ ଟଙ୍କା
ସାଧା ୧୫ ଟଙ୍କା

Digitized by srujanika@gmail.com

# **"SARALA KARA"**

Short Story Collection

Author/Publisher **PRADIPTA MISHRA**

Printed at- **Mishra Printers**
10A, Station Square, Unit-3
Bhubaneswar-751001

Cover Design-**Ravindran M. K.**
Govt. High School, Thrissi Lerry
P.O-THRISSI LERRY
KARTIKULAM (Via)
Wayanad, KERALA

Price DELUX- Rs. 18.00
POPULAR Rs. 15.00

*Digitized by srujanika@gmail.com*

‘‘ସରଳ କର’’ରେ ସ୍ଥାନ ପାଇଥିବା ଅଧିକାଂଶ ରଚନା, ଅମୃତାୟନ, ଆଜିକାଲି, ସଂଜୀବନୀ, ଗୃହିଣୀ, ଯଶୋଧାରା, ଗୋକର୍ଣ୍ଣିକା, ରାଜଧାନୀ, କଳାନିଧି, ଶତଦ୍ରୁ ପ୍ରଭୃତି ପତ୍ରିକାମାନଙ୍କରେ ଭିନ୍ନ ଭିନ୍ନ ସମୟରେ ପ୍ରକାଶିତ । ଏହିସବୁ ପତ୍ରିକାଗୁଡ଼ିକର ସଂପାଦକ/ସଂପାଦିକା ମାନଙ୍କ ନିକଟରେ ଲେଖକ କୃତଜ୍ଞ ।

ଲେଖକ

Digitized by srujanika@gmail.com

# ନିଜକଥା

ଗପ ଲେଖିବା ଅଧିକାଂଶ ଗାଳ୍ପିକଙ୍କ ପରି ମୋର ମଧ୍ୟ ପେଶା ନୁହେଁ ନିଶା । ଫୁରୁସତ୍ ସମୟରେ ଏଣୁ ତେଣୁ ଭବୁ ଭବୁ ଟପର ପ୍ଲଟଟିଏ ମନକୁ ଚାଲିଆସେ । ତାକୁ ଲେଖିବସେ । କେତେ ଦୂର ସଫଳ ହୋଇପାରିଛି ସେଇଟା ପାଠକମାନେ ବିଚାର କରିବେ ।

ଏହି ସଂକଳନରେ ସ୍ଥାନ ପାଇଥିବା ଷୋହଳଟି ଗପ ଭିନ୍ନ ଭିନ୍ନ ସମୟରେ ଲେଖାଯାଇଛି । କେତେଗୁଡ଼ାଏ ଟପ ପାଠ ପଢ଼ିବା ସମୟରେ, କେତେ ଗୁଡ଼ାଏ ଚାକିରୀ କାଳ ଭିତରେ । ତେଣୁ ଗପଗୁଡ଼ିକ ଭିତରେ ପାଞ୍ଚ ଛ ବର୍ଷର ବ୍ୟବଧାନ ରହିଯାଇଛି ।

ଏଇଟି ମୋର ପ୍ରଥମ ଗଳ୍ପ ସଂକଳନ । ଆପଣମାନଙ୍କ ନିରପେକ୍ଷ ମତାମତ ମୋର ଏକାନ୍ତ କାମ୍ୟ । ସେଇଗୁଡ଼ିକରୁହିଁ ମୁଁ ଆଗାମୀ ଦିନ ପାଇଁ ପ୍ରେରଣା ଖୋଜିବି ଏବଂ ତ୍ରୁଟିଗୁଡ଼ିକୁ ସୁଧାରିବାର ଚେଷ୍ଟା କରିବି ।

ଲେଖକ

Digitized by srujanika@gmail.com

# ସୂଚୀ

ହ୍ୱିଲିଙ୍ଗ୍ ଟର୍

ମନ ସିଂହାସନ

ପାଖଲୋକ

କୁଶବିଦ୍ଧ

ବିଷାକ୍ତ ପୃଥିବୀ

ପରଜିତ ମହାରଥୀ

ଯୋଦ୍ଧା

ଦୂରପରବତ

ଜୀବାନ୍ମୃତ ଫାଲ୍‌ଗୁନ

ସକାଳକୁ ଜଗିଥାଅ

କଥାର କୋଣାର୍କ ବ୍ୟଥାର ଧର୍ମପଦ

ଉତ୍ତରଣର ବର୍ଣ୍ଣବୋଧ

ଭିନ୍ନ ସ୍ୱର

ଅନ୍ଧ

ଅସନ୍ତୁଷ୍ଟ

ସରଳକର

*Digitized by srujanika@gmail.com*

# ହିଲିଙ୍ଗ୍ ଟଚ୍

ଚିନ୍ମୟ କେବେ ଆଶା କରି ନଥିଲା ଯେ ଆମେରିକାରେ ପହଞ୍ଚି ପହଞ୍ଚି ସେ ଏମିତି ଲୋକପ୍ରିୟ ହୋଇଯିବ । ସେ ଦିଲ୍ଲୀର ଏ. ଆଇ. ଆଇ. ଏମ୍. ଏସ୍.ରୁ ଏମ୍. ଡି. କରି ସାରି ଏଠିକି ଆସିଛି ସୁପର ସ୍ପେସିଆଲାଇଜେସନ୍ ପାଇଁ । ବାତ ରୋଗକୁ ନିୟନ୍ତ୍ରଣ କରିବା ଆଉ ତା ପାଇଁ ଔଷଧ ବାହାର କରିବା ହେଲା ତାର ମୂଳ ଲକ୍ଷ୍ୟ । କିନ୍ତୁ ଏଠି ପହଞ୍ଚି ଦିନେ ତା ପ୍ରଫେସରଙ୍କ ଘରେ କଥା ହେଉ ହେଉ ସେ ତା ଜେଜେଙ୍କ ବିଷୟରେ କହିଥିଲା । ବାର ବର୍ଷର ହୋଇଥିଲା ବେଳେ ତା ଜେଜେ କେମିତି ଦିନେ ଗାଧୋଇ ସାରି ମାଁ ଠାକୁରାଣୀଙ୍କ ପାଖରେ ମୁଣ୍ଡିଆ ମାରୁଥିବା ବେଳେ ଐଶ୍ୱରିକ ଶକ୍ତି ପାଇଥିଲେ । ତା ପରଠାରୁ ପ୍ରତିଦିନ ସେହି ସମୟରେ ତାଙ୍କ ହାତର ସ୍ପର୍ଶରେ ଅନ୍ଧ ଦେଖିପାରୁଥିଲା ଆଉ ପଙ୍ଗୁ ଚାଲିପାରୁଥିଲା । ଦୀର୍ଘ ଅଠେଇଶ ବର୍ଷଧରି ତାଙ୍କ ଘର ଅଗରେ କେମିତି ହଜାର ହଜାର ରୋଗୀ ଭିଡ଼ କରୁଥିଲେ । କିନ୍ତୁ ତାଙ୍କୁ ଚାଳିଶ ବର୍ଷ ହୋଇଥିବା ବେଳେ ଜେଜେ ତୀର୍ଥ ଭ୍ରମଣରେ ବାହାରିଲେ ଯେ ଆଉ ଫେରିଲେନି । ତାଙ୍କ ଚେଲାମାନେ ଫେରିଆସି କହିଲେ ଯେ ସେ ଋଷି ବେଶରେ ଧ୍ୟାନ କରୁଥିବା ଅବସ୍ଥାରେ ଦେହତ୍ୟାଗ କଲେ । ଚେଲାମାନେ କିଛି ଜାଣି ପାରିନଥିଲେ । ଅନେକ ସମୟ ଧରି ଧ୍ୟାନରୁ ନଉଠିବାରୁ ଏମାନେ ଯାଇ ଦେଖନ୍ତି ଜେଜେଙ୍କ ଦେହରେ ଆଉ ଜୀବନ ନାହିଁ ।

ଏକଥା ସେଦିନ ଚିନ୍ମୟ ତା ପ୍ରଫେସରଙ୍କ ଘରେ ବର୍ଣ୍ଣନା କଲାବେଳେ ସେଠାରେ ଜଣେ ସାମ୍ବାଦିକ ଶୁଣୁଥିଲେ । ସେ ତାକୁ ଏ ବିଷୟରେ ଗୋଟିଏ ଆର୍ଟିକିଲ ଲେଖିବାକୁ ପ୍ରବର୍ତ୍ତାଇଲେ । ଚିନ୍ମୟ ଠାରୁ "ହିଲିଙ୍ଗ୍ ଟଚ୍" ନାମକ ଆର୍ଟିକିଲଟି ନେଇ ସେ ତାଙ୍କ ନିଉଜ୍ ପେପରରେ ପ୍ରକାଶ କରାଇଥିଲେ । ସେଇ ଆର୍ଟିକିଲ୍ ଟା ଆମେରିକାରେ ଚହଳ ପକାଇ ଦେଲା । ଅନ୍ୟାନ୍ୟ ନିଉଜପେପର ବାଲା ତାଠାରୁ ଆର୍ଟିକିଲ ମାଗିଲେ । ଲସ୍ ଆଞ୍ଜେଲସ୍ ଟିଭିରେ ତାର ସାକ୍ଷାତକାର ଟେଲିକାଷ୍ଟ ହେଲା । ସେ ପ୍ରତିଦିନ ଗୋଛେ ଲେଖେ ଚିଠି ପାଇଲା ଏମିତକି ପକ୍ଷପାତ ଭୋଗୁଥିବା ଗୋଟିଏ ବୁଢ଼ି ଅନୁରୋଧ କରିଥିଲା ଗାଧୋଇ ସାରି ତାକୁ ଥରେ ଛୁଇଁବା ପାଇଁ ।

ଚିନ୍ମୟ ଆଗରୁ କେବେ ଲେଖା ଲେଖି କରୁନଥିଲା । କିନ୍ତୁ ଏଠାରେ ହଠାତ୍ ପ୍ରଚୁର ଅର୍ଥ ଆଉ ଲୋକପ୍ରିୟତା ହାସଲ କଲାପରେ ତାର ଲେଖାଲେଖି ପ୍ରତି

Digitized by srujanika@gmail.com

ଝୁଙ୍କ ବଢ଼ିଲା । ଏଥର ସେ ଗୋଟେ ଆର୍ଟିକିଲ ଲେଖିଲା ତା ବାପାଙ୍କ ବିଷୟରେ ତା ବାପା କେମିତି ଅଠର ବର୍ଷ ବୟସରେ କଲେଜ ଛାଡ଼ି ଗାନ୍ଧିଜୀଙ୍କ ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇଥିଲେ । ସ୍ୱାଧୀନତା ପରେ ସକ୍ରିୟ ରାଜନୀତିରେ ରହି ଦିନାକେତେ ମନ୍ତ୍ରୀ ବି ହୋଇଥିଲେ । ସେ କେମିତି ଏବେବି ଆଦର୍ଶ ଜୀବନ ଯାପନ କରନ୍ତି । ଖଦୀ ପିନ୍ଧନ୍ତି, ଛୁଟା ଜାଗନ୍ତି ଇତ୍ୟାଦି ।

ଏହି ଆର୍ଟିକିଲଟା ପ୍ରତି କିନ୍ତୁ କୌଣସି ରିଆକ୍ସନ ଦେଖା ଗଲା ନାହିଁ । ଗୋଟିଏ ହେଲେ ଚିଠି ଆର୍ଟିକିଲକୁ ସମାଲୋଚନା କରି ବା ପ୍ରଶଂସା କରି ଆସିଲାନି । ତାପରେ ସେ ଗାନ୍ଧିଜୀଙ୍କ ଉପରେ, ଗୀତା ଉପରେ ଏମିତି କେତେକେ ଆର୍ଟିକିଲ ଲେଖିଲା, କିନ୍ତୁ କୌଣସି ଗୋଟିଏ ଆର୍ଟିକିଲ ଆଉ ପ୍ରକାଶ ପାଇ ପାରିଲାନି । ସେ ହତାଶ ହେଲା ।

ପ୍ରଫେସର ଗିଲ୍‌ଫୋର୍ଡ ତାଙ୍କୁ ବୁଝାଇ ଦେଲେ ଯେ ସେ ଏଠାକୁ ଆର୍ଟିକିଲ ଲେଖିବା ପାଇଁ ଆସିନି । ଆସିଛି ବାତଜ୍ୱର ଉପରେ ଗବେଷଣା କରିବା ପାଇଁ । ତା ପିଛା ଭାରତ ସରକାର ଏତେ ପଇସା ଖର୍ଚ୍ଚ କରୁଛି । ସେ ତାର ପ୍ରତିଦାନ ଦେବାକୁ ହେବ ।

ଚିନ୍ମୟ ଲାଗିପଡ଼ିଲା । ପ୍ରଫେସର ଗିଲଫୋର୍ଡ ତାକୁ ସର୍ବଦା ସାହାଯ୍ୟ କରୁଥାନ୍ତି । ସେ ଦିନରେ ପ୍ରାୟ ଅଠର ଘଣ୍ଟା ଲାବୋରେଟରୀରେ ଭିତରେ କଟାଏ କେମିକାଲ ସାଙ୍ଗରେ କେମିକାଲ ମିଶାଇ ପ୍ରତିକ୍ରିୟା ପରୀକ୍ଷା କରଯାଏ । ତାକୁ ଠେକୁଆ ଦେହରେ ଇନ୍‌ଜେକ୍ସ କରାଇ ନାନା ପ୍ରକାର ରିଡ଼ିଂ ନିଆଯାଏ ।

ଦିନେ ଦିନେ ରାତି ଅଧରେ ଲାବୋରେଟେରୀରୁ ଫେରି ଅବଶ ଶରୀରଟାକୁ ଖଟ ଉପରେ ଅଜାଡ଼ ଦେଇ ଚିନ୍ମୟ ଭାବେ......

ଯଦି ଆଜି ରାତିରେ କୌଣସି ଏକ ଠାକୁରାଣୀ ତାକୁ ସ୍ୱପ୍ନରେ ପଚାରିବେ "ମୁଁ ତୋ ଉପରେ ସନ୍ତୁଷ୍ଟ, କି ବର ମାଗିବୁ ମାଗ ?"

ସେ କ'ଣ ମାଗିବ ?

ହୁଏତ ସେ ଚାହିଁବ ତା ଜେଜେଙ୍କ ପରି ହିଲିଙ୍ଗ୍ ଟଚ୍‌ର ଅଧିକାରୀ ହେବାକୁ ଅବା ପ୍ରଫେସର ଗିଲଫୋର୍ଡଙ୍କ ପରି ଜଣେ ବୈଜ୍ଞାନିକ ହେବାକୁ ।

ଏମିତି ଭାବୁ ଭାବୁ ତାକୁ ନିଦ ହୋଇଯାଏ । ନିଦ ଭାଙ୍ଗିଲେ ପରରାତିର ଅବାନ୍ତର ଚିନ୍ତା ଗୁଡାକ ମନେ ପଡ଼େ ।

ତା ଜେଜେଙ୍କ ଐଶ୍ୱରିକ ଶକ୍ତି ଉପରେ ତାର ସନ୍ଦେହ ହୁଏ ।

Digitized by srujanika@gmail.com

ସେ ଭବେ ତୁ'ଏତ କେତେଟା ରୋଗୀ ଆପେ ଆପେ ଭଲ ହୋଇଛନ୍ତି । ଆଉ ଭଲ ହୋଇ ସାରିଲାପରେ ସେମାନେ ଭବିଛନ୍ତି ଯେ ତା ଜେଜେଙ୍କ ଐଶ୍ୱରିକ ଶକ୍ତି ତାଙ୍କୁ ଭଲ କଲା ।

ଘଟଣାଟା କାଳକ୍ରମେ ଅତିରଂଜିତ ହୋଇ କାହାଣୀ ହେଉଛି, ଆଉ କାହାଣୀଟା ପୁଣିଥରେ ଅତିରଂଜିତ ହୋଇ କିମ୍ବଦନ୍ତୀରେ ପରିଣତ ହେଲାଣି ।

ତାଙ୍କୁ ସବୁଠାରୁ ଆଶ୍ଚର୍ଯ୍ୟ ଲାଗେ ଏମିତି ଗୋଟାଏ କିମ୍ବଦନ୍ତୀକୁ ଆମେରିକାର ଶିକ୍ଷିତ ସଭ୍ୟ ବାସିନ୍ଦାମାନେ ଏତେ ସହଜରେ ଗ୍ରହଣ କରିନେଲେ ଅଥଚ ମହାତ୍ମାଗାନ୍ଧିଙ୍କ ଦର୍ଶନ ଏମାନଙ୍କ ପାଇଁ ଅଜଣା ହୋଇଗଲା ।

ଏମାନେ କ'ଣ ଜାଣିନାହାନ୍ତି ଯେ ପ୍ରତ୍ୟେକ ଭରତୀୟଙ୍କ ଜେଜେଙ୍କୁ ନେଇ ଗୋଟିଏ ଗୋଟିଏ କିମ୍ବଦନ୍ତୀ ଗଢ଼ ହେବ ।

*　　　　*

ଚିନ୍ମୟ ଲାବୋରେଟରୀ ଯାଏ । ଠେକୁଆମାନଙ୍କ ଉପରେ କେମିକାଲସ୍‌ର ପ୍ରଭବକୁ ନିବିଡ ଭବରେ ଲକ୍ଷ୍ୟ କରେ ।

ଏଇ କେତେଦିନ ହେଲା ପ୍ରଫେସର ଗିଲ୍‌ଫୋର୍ଡ ଲାବୋରେଟରୀ ଆସୁ ନାହାନ୍ତି । ସେ ଫ୍ରାନ୍‌ସ ଯାଇଛନ୍ତି, ଗୋଟିଏ ସେମିନାର ଆଟେଣ୍ଡ କରିବା ପାଇଁ । ଚିନ୍ମୟ ଏକା ଏକା ଗବେଷଣା ଚଲୁରଖିଛି । ପ୍ରଫେସର ଗିଲ୍‌ଫୋର୍ଡଙ୍କ ଅନୁପସ୍ଥିତରେ ତାକୁ ଟିକିଏ ସ୍ୱାଧୀନତା ଆଉ ସୁଯୋଗ ମିଳିଛି ନିଜର ବ୍ୟକ୍ତିଗତ ଚିନ୍ତାଧାରକୁ ନେଇ ଗବେଷଣା କରିବାକୁ ।

ଏମିତି ଦିନେ ଭିନ୍ନ ଭିନ୍ନ କେମିକାଲସ୍‌କୁ ନେଇ ଏଟେ ସେଟେ କରୁ କରୁ ଚିନ୍ମୟ ଭବିଲା ଦୁଇଟି ବିଷାକ୍ତ କେମିକାଲସ୍ ମିଶାଇଲେ ତାର ରିଆକ୍‌ସନରେ ଯେଉଁ ତୃତୀୟ କେମିକାଲଟି ବାହାରିବ ସେଇଟା ଯେ ବିଷାକ୍ତ ହେବ ସେମିତି କିଛି ମାନେ ନାହିଁ । ସେଥିରୁ ହୁଏତ ବାତ ରୋଗରେ ଔଷଧ ତିଆରି କରିହେବ ।

ଏମିତି କେମିକାଲର ରିଆକ୍‌ସନ ଦେଖୁ ଦେଖୁ ତାକୁ ଗୋଟିଏ ଫର୍ମୁଲା ମିଳିଲା । ସେ ସେଇଟାକୁ ଆଣି ବାତଜ୍ୱରଗ୍ରସ୍ତ ଠେକୁଆ ଦେହରେ ଇନ୍‌ଜେକ୍ଟ କରି ଠେକୁଆଟିକୁ ଅବ୍‌ଜରଭେସନ ରୁମ୍‌ରେ ରଖିଲା ।

ଦୁଇ ତିନି ଦିନ ପରେ ଦେଖିଲା ଠେକୁଆଟି ଧୀରେ ଧୀରେ ସୁସ୍ଥ ହୋଇ ଉଠୁଛି । ଛ, ସାତ ଦିନ ବେଳକୁ ଠେକୁଆଟି ସଂପୂର୍ଣ୍ଣ ରୋଗ ମୁକ୍ତ ।

Digitized by srujanika@gmail.com

ପ୍ରଫେସର ଗିଲ୍‌ଫୋର୍ଡ଼ ଆସି ଆମେରିକାରେ ପହଞ୍ଚ ପହଞ୍ଚ ଚିନ୍ମୟ ତାଙ୍କୁ ଏହି ଖୁସି ଖବରଟା ଦେଇଦେଲା ସେ କିନ୍ତୁ ବିଶ୍ୱାସ କରିବାକୁ ନାରାଜ । କହିଲେ ଠେକୁଆଟିକୁ ହୁଏତ ବାତଜ୍ୱର ହୋଇନଥିଲା ।

ତା ପରଦିନ ଲବୋରିଏ ପ୍ରାଙ୍ଗଣରେ ଖୁଆଡ଼ରେ ବାଡ଼ ଭିତରେ ଆସନ୍ନ ହୋଇ ମୃତ୍ୟୁକୁ ଅପେକ୍ଷା କରିଥିବା ଠେକୁଆ ଦେହରେ ଫର୍ମୁଲାଟିକୁ ଇନ୍‌ଜେକ୍ଟ କରାହେଲା । ତାକୁ ଅବ୍‌ଜରଭେସନ ରୁମ୍‌ରେ ରଖାଗଲା । ପାଞ୍ଚ ଛଅ ଦିନ ପରେ ଦେଖାଗଲା ଯେ ଠେକୁଆଟି ରୋଗମୁକ୍ତ । ପ୍ରଫେସର ଗିଲ୍‌ଫୋର୍ଡ଼ଙ୍କ ନିର୍ଦ୍ଦେଶାନୁସାରେ ଠେକୁଆଟିକୁ ଆଉ ପାଞ୍ଚ ଛଅ ଦିନ ସେମିତି ରଖାଗଲା । ଠେକୁଆଟି ସଂପୂର୍ଣ୍ଣ ସୁସ୍ଥ ହୋଇ ଉଠିଲା । ପ୍ରଫେସର ଗିଲ୍‌ଫୋର୍ଡ଼ ଦିନକୁ ଦିନ ଗମ୍ଭୀର ହୋଇ ଯାଉଥାନ୍ତି । ସେ ଦିନେ ଚିନ୍ମୟ ପିଠିରେ ହାତମାରି କହିଲେ "ଇଉ ହାଭ୍ ଅଲ୍‌ସୋ ଇନ୍‌ହେରିଟେଡ୍ ସମ୍ ଅଫ ଇଓର ଗ୍ରାଣ୍ଡ ଫାଦରସ୍ କାଲିବର ।"

ତାପରେ ସେଇ ଫର୍ମୁଲାଟିକୁ ନେଇ ସନ୍ଦର୍ଭ ଲେଖା ଆରମ୍ଭ ହେଲା । ପ୍ରଫେସର ଗିଲ୍‌ଫୋର୍ଡ଼ ଚିନ୍ମୟକୁ କହିଲେ "ତମେ ଏତେଦିନ ହେଲା ଆମେରିକା ଆସି ଏଇ ଗବେଷଣାଗାର ଭିତରେ ବନ୍ଦୀ ଥିଲ । ଏବେ ଯାଅ, ଆମେରିକା ବୁଲି ଦେଖ । ମୁଁ ସନ୍ଦର୍ଭଟିକୁ ଲେଖୁଛି ।

ବୁଲାବୁଲି ସାରି ଚିନ୍ମୟ ଫେରିଆସି ଦେଖିଲା ସେଇ ସନ୍ଦର୍ଭଟିକୁ ସବମିଟ୍ କରି ପ୍ରଫେସର ଗିଲ୍‌ଫୋର୍ଡ଼ ଆନ୍ତର୍ଜାତୀୟ ସ୍ୱାସ୍ଥ୍ୟ ଗବେଷଣା ଅନୁଷ୍ଠାନ ତରଫରୁ ପୁରସ୍କୃତ ହୋଇସାରିଛନ୍ତି । ସେଥିରେ ତା ନାମ ରିସର୍ଚ୍ଚ ଅସିଷ୍ଟାଣ୍ଟ ଭାବରେ ରଖାଯାଇଛି ।

ସେ ପ୍ରଥମେ ପ୍ରଥମେ ବିଶ୍ୱାସ କରିପାରିଲାନି । ଆନ୍ତର୍ଜାତୀକ ଖ୍ୟାତି ସମ୍ପନ୍ନ ପ୍ରଫେସର ଗିଲ୍‌ଫୋର୍ଡ଼ଙ୍କଠାରୁ ସେ ଏହା ଆଶା କରୁନଥିଲା । ଏତେ ବଡ଼ ବିଖ୍ୟାତ ଲୋକ ଏମିତି ବିଶ୍ୱାସଘାତକତା କରିପାରିଲେ । ଆଉ ଜଣଙ୍କ ଦ୍ୱାରା ଆବିଷ୍କୃତ ଜିନିଷକୁ ନିଜ ନାଁରେ କରାଇ ଦେଇ ପାରିଲେ ।

ତାର ଇଚ୍ଛା ହେଉଥିଲା, ପାର୍ଟି କରି ଘଟଣାଟା ଘରିଆଡ଼େ ପ୍ରଚାର କରି ଦେବାକୁ । ହେଲେ ସେ ନିଜେ ଯେତେବେଳେ ଘଟଣାଟା ବିଶ୍ୱାସ କରିପାରୁନାହିଁ, ଅନ୍ୟମାନଙ୍କ ମନରେ ବିଶ୍ୱାସ ଜନ୍ମାଇବାଟା କଣ ଏତେ ସହଜ ହେବ ?

ସେ ଭାବିଲା ହିଲିଙ୍ଗ୍ ଟଚ ର ଅଧିକାରୀ ତା ଜେଜେ ତାକୁ ସ୍ୱପ୍ନରେ ଆସି ଫର୍ମୁଲାଟା କହିଦେଲେ । ଏଇ ମର୍ମରେ ଆର୍ଟିକିଲଟେ ଲେଖିଲେ କେମିତି ହୁଅନ୍ତା ! ହୁଏତ ଏମାନେ ଘଟଣାଟିକୁ ବିଶ୍ୱାସ କରନ୍ତେ ।

Digitized by srujanika@gmail.com

ପରେ ପରେ ତାର ସନ୍ଦେହ ହେଲା ତାର "ହିଡ଼ଙ୍ଗ୍ ଟର" ଆର୍ଟିକିଲଟାକୁ କଣ ପ୍ରକୃତରେ ଏମାନେ ବିଶ୍ୱାସ କରିଥିଲେ ?

ନା ପିଲାଦିନୁ କଂପ୍ୟୁଟରର ଆଖ ଭିଡିଓରେ ଖେଳି ଆସୁଥିବା ଭାଗିପାଇଁ ତା ଜେଜେଙ୍କ ଜୀବନିଟା ଆଲମା କାହାଣୀର ଖୋରାକ ଯୋଗାଇ ଦେଉଥିଲା ।

ଚିନ୍ମୟର ଆମେରିକା ରହଣି ସରି ଆସିଲା । ସେ ଭାରତକୁ ଫେରି ଆସିବାର ଅଳ୍ପଦିନ ପରେ ଜାଣିବାକୁ ପାଇଲା ଯେ ପ୍ରଫେସର ଗିଲ୍‌ଫୋର୍ଡ ସେଇ ସନ୍ଦର୍ଭଟି ଉପରେ ନୋବେଲ ପ୍ରାଇଜ୍ ପାଇଲେ ।

ତାଙ୍କର ସହଯୋଗୀ ହିସାବରେ ତା ଖ୍ୟାତି ମଧ୍ୟ ଭାରତରେ ବଢ଼ିବାକୁ ଲାଗିଲା । ଏବେ ତାକୁ ସେଇ ଫର୍ମୁଲାରୁ ଔଷଧ ପ୍ରସ୍ତୁତ କରିବା ପାଇଁ ଭାରତ ସରକାରଙ୍କ ତରଫରୁ ସମସ୍ତ ପ୍ରକାର ସୁଯୋଗ ଦିଆଗଲା ।

କିନ୍ତୁ ସେ ଦେଖିଲା, ହେଇ କେମିକାଲସ୍ ଗୁଡକୁ ନେଇ ଭାରତରେ ଔଷଧ ତିଆରି କଲେ ଔଷଧଗୁଡ଼ିକ ଭରି ଦାମିକା ହୋଇଯିବ । ଗୋଟିଏ ବାତ ରୋଗୀକୁ ଭଲ ହେବା ପାଇଁ ପ୍ରାୟ ତିରିଶ ଚାଳିଶ ହଜାର ଟଙ୍କା ଖର୍ଚ୍ଚ କରିବାକୁ ପଡ଼ବ । ସେ ଶସ୍ତାରେ କେମିତି ସେଇ ଔଷଧ ତିଆରି କରିହେବ ସେଥିପାଇଁ ଚେଷ୍ଟା ଚଳାଇଲା ।

ସେ ନାନା ପ୍ରକାର ଚେରମୂଳ ଇତ୍ୟାଦି ଆଣି ଲାବୋରେଟରୀରେ ପରୀକ୍ଷା ଚଳାଇଥାଏ । କାଳେ ସେ ଦୁଇଟି କେମିକାଲ୍‌ସର ଗୁଣ କେଉଁଥିରୁ ମିଳିଯିବ ।

ତିନି ବର୍ଷ ଗଲା । ଚିନ୍ମୟ ଦେଖିଲା କେବଳ ଅଁଳାରସ ଆଉ ଖଇରରେ ସେହି ପ୍ରକାର କେମିକାଲ ରିଆକ୍‌ସନ ହେଉଛି । ସେ ଏହି ଆବିଷ୍କାରଟିକୁ ସରକାରଙ୍କୁ ଜଣାଇ ଦେଲା ।

ଚିନ୍ମୟ ଅନେକ ଦିନ ପରେ ଛୁଟି ନେଇ ଗାଁକୁ ଆସିଥାଏ । ଦଶହରା ସମୟ ଗାଁରେ ପୋଥି ଅନୁକୂଳ ବସିଥାଏ । ତାଳପତ୍ର ପୋଥି ଦେଖି ବାପାଙ୍କୁ ପଚାରିଲା "ଏଥିରେ କଣ ଲେଖାଅଛି ?"

ବାପା କହିଲେ ଏଗୁଡିକ ଜେଜେଙ୍କର । କଣ ସବୁ ପୂଜା ପର୍ବାଣୀ ଆଉ ଔଷଧ ପତ୍ର ବିଷୟରେ ଲେଖାଅଛି । ଏଥିରୁ ଅଧିକାଂଶ ନଷ୍ଟ ହୋଇଗଲାଣି । ଆଉ ପଢ଼ି ହେବ ନାହିଁ । ଅଳ୍ପ କେତେଟା ଭଲ ଅଛି ।

Digitized by srujanika@gmail.com

ଚିନ୍ମୟ ପୋଥି ଏପଟ ସେପଟ କରୁକରୁ ଗୋଟିଏ ତାଳପତ୍ର ସେଥିରୁ ଖସିପଡ଼ିଲା । ଚିନ୍ମୟ ତାକୁ ଆଣି ପଢ଼ିବାକୁ ଚେଷ୍ଟା କଲା । କରଣୀ ଅକ୍ଷର । ପଢ଼ି ପାରିଲାନି । ବାପା ପଢ଼ି ଶୁଣାଇଦେଲେ । "ଅଁଳା ରସ ସାଙ୍ଗରେ ଝଡ଼ର ପାଣି ମିଶାଇ ବିଷ୍ଣୁ ସହସ୍ର ନାମ ପଢ଼ି ପିଇଦେଲେ ବାତଜ୍ୱର ଭଲ ହୋଇଯିବ ।

ତାପର ତାଳପତ୍ରଟାରେ ଏସବୁର ଯଥାର୍ଥତା ଦେଖେଇବାକୁ ଯାଇ ଅଁଳା ଖଇର ଆଉ ବିଷ୍ଣୁଙ୍କୁ ନେଇ ଗୋଟିଏ କାହାଣୀ ବର୍ଣ୍ଣନା କରଯାଇଛି ।

ଚିନ୍ମୟ ମୁଣ୍ଡଟେକି ଭେଡେଙ୍କ ତୈଳଚିତ୍ରଟାକୁ ଦେଖିଲା । ଗୈରିକ ବସ୍ତ୍ର ମୁଣ୍ଡରେ ଜଟା, ମୁହଁରେ ଦାଢ଼ି, ସତେ ଯେମିତି ଜଣେ ସନ୍ନ୍ୟାସୀ । ମୁହଁରେ ଅମାୟିକ ହସ । ହସଟିରୁ ହିଁ ତାଙ୍କର ସରଳ ନିଷ୍କପଟ ହୃଦୟ ବାରି ହୋଇପଡ଼େ ।

ତାର ପ୍ରଫେସର ଗିଲ୍‌ଫୋର୍ଡଙ୍କର ଲାବୋରେଟରୀ ଭିତରର ତସ୍ବୀର ମୁହଁଟା ମନେ ପଡ଼ିଗଲା ।



Digitized by srujanika@gmail.com

# ମନ ସିଂହାସନ

ସ୍କୁଲ ଛାଡ଼ି କଲେଜରେ ଜଏନ୍ କରିବା ପରଠାରୁ ହିଁ ଚିନୁ କେମିତି ଏକ ଅଦ୍ଭୁତ ପରିବର୍ତ୍ତନ ଲକ୍ଷ୍ୟ କରୁଥିଲା । ଗାଁ ସ୍କୁଲରେ ପିଲାଥିଲେ ଅଳ୍ପ । ତାଙ୍କରି ଚାରି ନହେଲେ ଆଖ ପାଖ ଗାଁର । ସ୍କୁଲରେ ସେ ନେତାଜି ମନିଟର ନଥିଲା ଯଦିଓ ଭଲମନ୍ଦରେ ତାର ମତାମତ ନିଆଯାଉଥିଲା । ଗଣେଶ ପୂଜା କି ସରସ୍ୱତୀ ପୂଜାରେ ଅନ୍ୟମାନଙ୍କ ସାଙ୍ଗରେ ସେ ବି ସଜାସଜିରେ ଯୋଗ ଦେଉଥିଲା । କଲେଜରେ କିନ୍ତୁ ସବୁ ଅଲଗା । ତାର ଯେମିତି ଅବସ୍ଥିତି ନାହିଁ । ଅଧ୍ୟାପକମାନଙ୍କଠାରୁ ଆରମ୍ଭ କରି ସହପାଠୀମାନଙ୍କ ଦୃଷ୍ଟି ଦୂର ବତୀଘରର ଆଲୁଅ ପରି ତା ମୁଣ୍ଡ ଉପର ଦେଇ ଚାଲିଯାଉଛି । ତା ଉପରେ କେବେ ପଡୁନି । ଏଠି କୌଣସି ଦିଗରେ ସଫଳତା ହାସଲ କରିଥିବା ପିଲାମାନଙ୍କରହିଁ କଦର । ପାଠ ପଢ଼ାରେ ହେଉ, ଖେଳ କସରତରେ ହେଉ, ରାଜନୀତିରେ ହେଉ ଅଥବା ମାରପିଟରେ ହେଉ, ଅନ୍ୟମାନଙ୍କଠାରୁ ଅଧିକା ହେଇପାରୁଥିବା ପିଲାମାନେ ହିଁ ଏଠି ଆଦର ଆଉ ସମ୍ମାନ ପାଇଥାନ୍ତି । ଚିନୁ ପରି ମଫସଲରୁ ଆସି ମେସ୍‌ରେ ରହି ଭବିଷ୍ୟତକୁ ନେଇ ଆଶା ଆଉ ଆଶଙ୍କାର ସ୍ୱପ୍ନ ଦେଖୁଥିବା ପିଲାମାନଙ୍କ ପାଇଁ କଲେଜ ହେଲା ଗୋଟିଏ ଘଞ୍ଚ ଜଙ୍ଗଲ ପରି............

ହିଷ୍ଟ୍ରି ଟିଉଟୋରିଆଲରେ ସାର୍ ଜଣ ଗୋଟାଏ ବୁଝାଉ ବୁଝାଉ ଡେରି ହୋଇଗଲା । ପର ପିରିୟଡଟା ଲଜିକ୍ ଜେନେରାଲ କ୍ଲାସ । ଲଜିକ୍ ସାର୍ ଭାରି ଚିଡ଼ା ଟିକେ ଡେରିରେ ଗଲେ ଚିଡ଼ନ୍ତି, ଏଣୁ ତେଣୁ ଶୁଣାନ୍ତି । ଗାର୍ଲ୍‌ସ୍ କମନ ରୁମ୍ ପରେ ଆଉ ଦୁଇଟା ରୁମ୍, ତାପରେ ଯାଇ ହଲ୍ । ଚିନୁ ଜୋରରେ ଜୋରରେ ପାଦ ପକାଇଲା । ହଠାତ୍ ତା ସ୍ଲିପରର ଷ୍ଟ୍ରାଇପଟା ଛିଣ୍ଡି ଗଲା, ସେ ହାମୁଡେଇ ହୋଇ ପଡ଼ିଗଲା । ଗାର୍ଲ୍‌ସ୍ କମନ୍ ରୁମ୍ ଆଗରେ ଠିଆ ହୋଇ ଗପ କରୁଥିବା ତିନି ଜଣ ଝିଅ ଖିଲ୍ ଖିଲ୍ ହୋଇ ହସି ଉଠିଲେ । ସାମନ୍ତ ଚନ୍ଦ୍ରଶେଖର କଲେଜର ବିଶାଳ ପରିସର ଭିତରେ ନିଜର କ୍ଷୁଦ୍ର ବ୍ୟକ୍ତିତ୍ୱକୁ ଖୋଜି ବୁଲୁଥିବା ଚିନୁ ସତେ ଯେମିତି ନିଜ ବ୍ୟକ୍ତିତ୍ୱର ମୃତ୍ୟୁ ନିଜ ଆଖି ଆଗରେ ଦେଖିପାରିଲା । ଛିଣ୍ଡା ଚପଲଟା ହାତରେ ଧରି ମେସ୍‌କୁ ଫେରିଆସି ଚିନୁ ଆଖିର ଲୁହରେ ତକିଆ ଖୋଳଟା ଭିଜେଇଦେଲା ।

Digitized by srujanika@gmail.com

ରୁମ୍ ଦୁଆରରେ କାହାର ଆଘାତ, ଆଉ ଚିନୁ ଚିନୁ ଡାକରେ ସେ ପ୍ରକୃତିସ୍ଥ ହେଲା । ଦେଖିଲା ଘଣ୍ଟାରେ ରାତିଟା ବାଜିଲାଣି । ସେ ତା ହେଲେ ଘରିଘଣ୍ଟା ଧରି ରୁମ୍‌କୁ ଭିତରୁ ବନ୍ଦ କରି କାନ୍ଦୁଥିଲା ତାର ରୁମ୍‌ମେଟ ବିଜୟ । ବିଜୟ କହିଲା, "କାନ୍ଦୁଥିଲୁ କିରେ", ତୋ ଭଳିଆ ବୋକା ଆଉ ଏ ପୃଥିବୀରେ କେହି ନାହାନ୍ତି । ଶଳା ମାଇକିଆଙ୍କ ଭଳିଆ ଦୁଆର କିଳି କାନ୍ଦୁଚୁ କ'ଣ ବେ, ବାହାରକୁ ଯାଇ ଦେଖ୍ ତୋତେ କିଏ ଅପେକ୍ଷା କରିଛି । ଚିନୁ ବାହାରକୁ ଯାଇ ଦେଖିଲା ସେଇ ନେଳୀ ପୋଷାକ ପିନ୍ଧା ଝିଅଟା, ତାଙ୍କରି କ୍ଲାସର, ଗାର୍ଲ କମନ ରୁମ୍ ଆଗରେ ଠିଆ ହୋଇଥିବା ଝିଅମାନଙ୍କ ଭିତରୁ ଜଣେ । ଚିନୁକୁ ଦେଖି ସେ ତା ଆଡକୁ ଆସିଲା, ଚିନୁ ଲକ୍ଷ୍ୟକଲା ଝିଅଟିର ଆଖି ଲୁହରେ ଛଳଛଳ । ବାଷ୍ପରୁଦ୍ଧ କଣ୍ଠରେ ଝିଅଟି ବହୁତ କଷ୍ଟରେ ସକାଳର ଆଚରଣ ପାଇଁ କ୍ଷମା ମାଗିଲା । ମୋର ବ୍ୟବହାର ପାଇଁ ମୁଁ ଦୁଃଖିତ, ତମକୁ ଅପମାନିତ କରିବା ମୋର ଉଦ୍ଦେଶ୍ୟ ନଥିଲା । ମାଇଣ୍ଡ କରିବେନି !"

ଚିନୁ ବହୁତ କିଛି କହିବାକୁ ଚାହୁଁଥିଲା । କିନ୍ତୁ ସେ କିନ୍ତୁ କିଛି କହି ପାରିଲାନି, ଦୀର୍ଘ ଘରିଘଣ୍ଟା କାନ୍ଦିଥିବାରୁ ହେଉ ବା ଏଇ ଝିଅର ଉପସ୍ଥିତି ପାଇଁ ହେଉ ସେ ଚେଷ୍ଟା କରି ମଧ୍ୟ କିଛି କହି ପାରିଲାନି, ସତେ ଯେମିତି ସେ ବାକ୍‌ଶକ୍ତି ରହିତ ହୋଇଯାଇଛି ।

ଝିଅଟି ଚାଲିଗଲା ପରେ ଚିନୁକୁ ପ୍ରକୃତିସ୍ଥ ହେବାକୁ ବେଶ୍ କିଛି ସମୟ ଲାଗିଲା । ଝିଅଟି ଦେହରୁ କେମିତି ମିଠା ମିଠା ବାସ୍ନା ବାହାରୁଥିଲା । ସେଇଟା କଣ କେଉଁ ଏକ ଦାମୀ ସେଣ୍ଟର ବାସ୍ନା ? ଚିନୁ ଭାବିଲା, ନା ସେଣ୍ଟର ବାସ୍ନା ଏମିତି ହେବନି । ତାହେଲେ ତା ଦେହର ବାସ୍ନା ବୋଧେ ଏମିତି........ବିଜୟ କହୁଥିଲା ଝିଅଟିର ନା ରଶ୍ମୀ, ଡାକ ନାଁ ରିନୀ......

ଚିନୁ ଠିକ୍ କରିନେଲା ଯେ, କିଛି ଗୋଟାଏ କରିବାକୁ ହେବ । ଏ ଗତାନୁଗତିକ ଜୀବନ ଭିତରୁ ନିଜକୁ ମୁକ୍ତ କରିବାକୁ ହେବ । ତାପରେ ଚିନୁ ଲାଗିଗଲା ବ୍ୟକ୍ତିତ୍ୱ ଅନୁସନ୍ଧାନରେ । କଲେଜ ଡିବେଟ୍ କଂପିଟେସନରେ ହେଉ, କି ଏସେ-କଂପିଟେସନ୍ ହେଉ, କଲଚରାଲ ଫୋରମ ହେଉ କି ଥିଙ୍କରିଯ୍ ମିଟ ହେଉ, ସବୁ ସଭ ସମିତିରେ ଚିନ୍ମୟ ପ୍ରଧାନର ନାମ ଯୋଡା ହେଲା । ଏମିତି କିଛିଦିନ କଟିଲା । କିନ୍ତୁ ବିଶେଷ କିଛି ଲାଭ ହେଲାନି । ଚିନୁ ଦେଖିଲା ଏବେ ମଧ୍ୟ କିଛି ପିଲା ଯାହା ନଜରରେ ପଡୁଛନ୍ତି । ସେ ଆଉ ତାପରି ଅନେକ ପିଲା, ଅନେକଙ୍କ ଦୃଷ୍ଟି ଆଢୁଆଳରେ ରହିଯାଉଛନ୍ତି । କିନ୍ତୁ ସଭସମିତିରେ ବସିବା ଫଳରେ ଚିନୁର କେତେଜଣ ନୂଆ ପିଲାଙ୍କ ସହିତ ପରିଚୟ ହେଲା । ସେମାନଙ୍କ ଭିତରୁ ଜଣେ ହେଲା ସଞ୍ଜୟ, ତାଙ୍କ ଘର ତା ମେସ୍ ପାଖରେ । ତା ବାପା ଜଣେ ଇଂଜିନିୟର । ସାହିତ୍ୟରେ ତାଙ୍କର ଭାରି ଆଗ୍ରହ ।ପ୍ରତି ଶନିବାର ସନ୍ଧ୍ୟାରେ ତାଙ୍କ

Digitized by srujanika@gmail.com

ଘରେ ଆସନ୍ତ ବସେ । ସଞ୍ଜୟ ସାଙ୍ଗରେ ଚିନ୍ନୁ ବି ଧୀରେ ଧୀରେ ସାହିତ୍ୟ ଆସରରେ ଯୋଗଦେବାରେ ଲାଗିଲା । ଚୁପ୍‌ଚାପ ବସି ଅନ୍ୟମାନଂକ ଆଲୋଚନା ଶୁଣେ, କବିମାନଂକ କବିତା ଶୁଣେ, ତାକୁ ଖୁବ ଭଲ ଲାଗେ ।

ଏମିତି କେତେଥର ସାହିତ୍ୟ ଆସରରେ ଯୋଗଦେବା ପରେ ଚିନ୍ନୁ ତା ନିଜ ଭିତରେ ଯେମିତି ଏକ ପରିବର୍ତ୍ତନ ଲକ୍ଷ୍ୟ କଲା । ଆଗରୁ ସେ ଓଡିଆ ସାହିତ୍ୟ ମାନେ, ସ୍କୁଲରେ ପଢ଼ିଥିବା ସାହିତ୍ୟ ପ୍ରବେଶ, କବିତା ପ୍ରବେଶ ନହେଲେ କଲେଜରେ ପଢୁଥିବା ଦୁଇ ତିନି ଖଣ୍ଡ ବହିକୁହିଁ ବୁଝୁଥିଲା । ଏବେ ସେ ଲାଇବ୍ରେରୀରୁ ଅନେକ ଗୁଡ଼ାଏ ବହି ନେଇ ପଢ଼ିବା ଆରମ୍ଭ କଲା । ଗୋଟିଏ ନୂଆ ଦୁନିଆର ସନ୍ଧାନ ପାଇଲା । ତାକୁ ବି ବେଳେ ବେଳେ କବିତା ଲେଖିବାକୁ ଇଚ୍ଛାହୁଏ । ମେସ୍‌ରେ ଅନ୍ୟମାନେ ଶୋଇବା ପରେ ଲୁଚେଇ ଲୁଚେଇ କବିତା ଲେଖେ । କିନ୍ତୁ ସକାଳୁ ଉଠି ଯେତେବେଳେ ପଢ଼େ, ତାକୁ ଆଉ ଭଲ ଲାଗେନି । ଚିରିଚାରି ଫୋପାଡ଼ ଦିଏ ।

ଦିନେ ଏମିତି କବିତାଟିଏ ଲେଖିଥିଲା । ସେଇଟି କିନ୍ତୁ ତାକୁ ଚିରି ଫୋପାଡ଼ ଦେବାକୁ ଇଚ୍ଛା ହେଲାନି । ଭାବିଲା କାହାକୁ ଦେଖାଇବ । କାହାକୁ ବା ଦେଖାଇବ ? ଠିକ୍ କଲା ସଞ୍ଜୟର ବାପାଙ୍କୁ ଦେଖାଇବ । ସେଦିନ ରବିବାର ହୋଇଥାଏ । ଚିନ୍ନୁ ଗେଟ୍ ଖୋଲି ସଞ୍ଜୟ ଘରକୁ ଗଲା । ସଞ୍ଜୟର ସାଇକେଲ ନାହିଁ । ବୋଧେ ବାହାରକୁ ଯାଇଛି । ତା ବାପା ଡ୍ରଇଂ ରୁମ୍‌ରେ ବସି ଖବରକାଗଜ ପଢୁଛନ୍ତି । ଚିନ୍ନୁକୁ ଦେଖି ପଚାରିଲେ, ''କଣ ହେଲା ଚିନ୍ମୟ, ସକାଳୁ ସକାଳୁ କୁଆଡେ'' ଚିନ୍ନୁ ଲାଜ ଲାଜ ହୋଇ ପକେଟରୁ କବିତାଟାକୁ କାଢ଼ି ବଢାଇ ଦେଲା । କହିଲା ''ମଉସା କବିତାଟିଏ ଲେଖିଛି । ଟିକିଏ ଦେଖିବେକି କେମିତି ଲାଗୁଛି ?''

ସଞ୍ଜୟର ବାପା କବିତାଟିକୁ ପଢ଼ିଲେ, ଏଇ ସମୟରେ ସଞ୍ଜୟର ମା' ଚା କପ୍‌ଟା ନେଇ ତାଙ୍କ ପାଖକୁ ଆସୁଥିଲେ । ତାଙ୍କୁ ସଞ୍ଜୟର ବାପା କହିଲେ 'ଦେଖଲଣି ଚିନ୍ମୟ କେମିତି କବିତା ଲେଖିଛି । ପିଲାଟାର ପ୍ରତିଭାଅଛି । ଲେଖାଲେଖି କଲେ ଖୁବ୍ ନାଁ କରିବ ।

ଏଇ କଥା କେଇପଦ ଚିନ୍ମୟ ମନରେ ଗୋଟିଏ ବିରାଟ ପରିବର୍ତ୍ତନ ଆଣି ଦେଲା । ତା ପରଠାରୁ ଚିନ୍ନୁ ସାହିତ୍ୟ ଆସରରେ ଯୋଗ ଦେଲା ଜଣେ ନିରବ ଶ୍ରୋତା ଭାବରେ ନୁହେଁ ଜଣେ ଉଦୀୟମାନ କବି ଭାବରେ । ବିଭିନ୍ନ ପତ୍ର ପତ୍ରିକାରେ ତାର କବିତା ଛପା ହେଲା । ଚିନ୍ମୟ ପ୍ରଧାନ ଦିନ କେତେଟା ଭିତରେ ହୋଇଗଲା ଜଣେ ଜଣାଶୁଣା କବି । ଯାହାର କବିତା ବିଭିନ୍ନ ପତ୍ର ପତ୍ରିକାରେ

Digitized by srujanika@gmail.com

ପ୍ରକାଶ ପାଏ, ଆକାଶବାଣୀରେ ଯୁବବାଣୀ କାର୍ଯ୍ୟକ୍ରମରେ ଶୁଣିବାକୁ ମିଳେ, ଆଉ ଦୂରଦର୍ଶନରେ ଯୁବଦର୍ଶନରେ ମଧ୍ୟ ପ୍ରଚାରିତ ହୁଏ ।

କଲେଜରେ ବିନୀ ସାଙ୍ଗରେ କେତେ କେମିତି ଦେଖାହୁଏ ଚିନୁର, ବିନୀ ହସିଦେଇ ଚାଲିଯାଏ, କଥାବାର୍ତ୍ତା ହେବାକୁ ସୁଯୋଗ ନଥାଏ । +୨ ଚରୋଡା ଦ୍ୱିତୀୟ ଶ୍ରେଣୀରେ ପାଶ୍ କରି ବି.ଏ.ରେ ଇଂରାଜୀ ଅନର୍ସ ନେଇ ଚିନୁ ଦେଖିଲା ବିନୀବି ଇତିହାସ ଅନର୍ସ ନେଇଛି । କାହିଁକି କେଜାଣି ସେ ମନେ ମନେ ଖୁସି ହୋଇଗଲା । ପରେ ଜାଣି ପାରିଲା, ସେମାନଙ୍କର ଟ୍ୟୁଟୋରିଆଲ୍ ଟେଷ୍ଟ, ମଧ୍ୟ ଏକା । ଏବେ କଲେଜରେ ଦୁଇଜଣଙ୍କର ପ୍ରତ୍ୟେକ ଦିନ ଦେଖା ହୁଏ । କଥାବାର୍ତ୍ତା ହୁଏ । ବିନୀ କବିତା ଲେଖେ ନାହିଁ ସତ କିନ୍ତୁ ଶୁଣିବାକୁ ଭଲ ପାଏ । ଚିନୁର ପ୍ରତ୍ୟେକ କବିତାର ପ୍ରଥମ ଶ୍ରୋତା ହେଲା ବିନୀ । ଏ ଦୁଇଜଣଙ୍କ ସମ୍ପର୍କ ଚିନୁର ସାଙ୍ଗ ମହଲରେ ବା ବିନୀର ସାଙ୍ଗ ମହଲରେ କାହାକୁ ଅଜଣା ନାହିଁ । ବିନୀ ତ ସାନଭଇ ହାତରେ ଚିନୁଠୁ ନୋଟ୍ ଖାତା, ବହି ଇତ୍ୟାଦି ମଗାଏ । ଭଲମନ୍ଦ ଦିନରେ ଚିଠାପଣା ପଠାଇ ଦିଏ । ଚିନୁକୁ ଦିନେ ତାଙ୍କ ଘରକୁ ଡାକି ନେଇଥିଲା । ବିନୀର ବାପା ଜଣେ ବଡ ଅଫିସର । ତା ମା ଚିନୁକୁ ବହୁତ ଆଦର କଲେ । ବିନୀ ଲକ୍ଷ କରେ ଯେ ଛୁଟୀ ଫୁଟିରେ ଗାଁକୁ ଯାଇ ଫେରିବା ପରେ ଚିନୁ କିଛିଦିନ ଅସ୍ୱାଭାବିକ ଭାବରେ ଗମ୍ଭୀର ରହେ । ତାଠାରୁ ଦୂରେଇ ରହିବାକୁ ଚେଷ୍ଟା କରେ । ଦିନେ ଏକୁଟିଆ ଥିବାବେଳେ ବିନୀ ଚିନୁକୁ ପଚାରିଲା "ତମେ ଗାଁରୁ ଫେରି ଆସିବା ପରେ ଏମିତି ସିରିୟସ କାହିଁକି ହେଇଯାଅ । ଚିନୁ ସେମିତି ଦିଗ୍‌ବଳୟ ଆଡକୁ ଦୃଷ୍ଟି ରଖି କହିଲା "ଗାଁକୁ ଯାଇ ବାସ୍ତବତାକୁ ନିକଟରୁ ଦେଖିଲେ ମତେ ତମେ ଆଉ ଏ କବିତା ଲେଖାସବୁ କେମିତି ମିଛ ଲାଗେ, ବାପା ମୋର ଜଣେ ସାଧାରଣ ଚାଷୀ, ଘରେ ଦିଜଣ ବିବାହ ଯୋଗ୍ୟା ଭଉଣୀ, ତେଣେ ବାପାଙ୍କ ଏକା ଜିଦ୍ ଧାର୍ କରଜ ହେଉ ପଛେ ମୁଁ ଯେମିତି ପାଠ ପଢ଼ିବି, ମଣିଷ ହେବି ।" ଚିନୁ ଚୁପ୍ ରହିଲା ।

ବିନୀ ଆଗରୁ ଶୁଣିଛି ଚିନୁ ଠାରୁ, ତା ମା' ମୃତ୍ୟୁ ଶଯ୍ୟାରେ ବାପାଙ୍କୁ ଅନୁରୋଧ କରିଥିଲେ "ଯେମିତି ବି ହେଉ ଚିନୁକୁ ମଣିଷ କରିବ, ସେ ଯେତେଦୂର ପଢ଼ିପାରିବ ପଢେଇବ" ।

ବିନୀ ଆଶ୍ୱାସନା ଦିଏ, "ଏମିତି ଆଉ କେତେ ଦିନ ଯେ, ତମେ ଚାକିରୀ କରିଗଲେ ସବୁ ଠିକ୍ ହୋଇ ଯିବନି, ତା ଛଡା ତମର ଷଯଣ୍ଣ ଟାଲେଣ୍ଟ ।"

ଚିନୁ କିଛି ମନ୍ତବ୍ୟ ଦିଏନି, ଯେଉଁକଥା ଭାବି ପ୍ରତିଦିନ ନିଜକୁ ନିଜେ ସାନ୍ତ୍ୱନା ଦେବାକୁ ଚେଷ୍ଟା କରି ଅସମର୍ଥ ହୁଏ, ସେଇ କଥାଗୁଡିକ ବିନୀ ମୁହଁରୁ ଶୁଣିଲେ କେମିତି ବାସ୍ତବ ବାସ୍ତବ ଲାଗେ ।

Digitized by srujanika@gmail.com

ବି.ଏ. ପରୀକ୍ଷା ଆଉ ଅଳ୍ପଦିନ । କ୍ଲାସ ଆଉ ହେଉନି, ଚିନୁ ଆଉ ବିନୀ ପଢ଼ାପଢ଼ିରେ ବ୍ୟସ୍ତ । ପ୍ରତିଦିନ ଦେଖା ହେଉନି । ମଝିରେ ମଝିରେ ନୋଟ୍ ଖାତା ବା ବହିପତ୍ର ବଦଳା ବଦଳି ବେଳେ ଯାହା କିଛି ସମୟ ପାଇଁ ଦେଖା ହୁଏ ।

ପରୀକ୍ଷା ଆଉ ପନ୍ଦର ଦିନ ଅଛି, ଚିନୁର ସାଙ୍ଗ ବିଜୟ ବିନୀ ଘରକୁ ଆସି ଚିଠି ଖଣ୍ଡେ ଦେଇଗଲା ଚିଠିରେ ଲେଖିଥିଲା ।

ସ୍ନେହର ବିନୀ,

ଗାଁରୁ ଟେଲିଗ୍ରାମ ପାଇଲି, ବାପାଙ୍କ ଦେହ ସିରିୟସ, ଆଜି ଗାଁକୁ ଯାଉଛି । ତମକୁ ଦେଖା କରିବାକୁ ସମୟ ନାହିଁ । ପରୀକ୍ଷା ପୂର୍ବରୁ ନିଶ୍ଚୟ ଫେରିଆସିବି । ପରୀକ୍ଷା ହଲ୍‌ରେ ଦେଖା ହେବ ।

ଇତି ତମର

ଚିନୁ..........

ପରୀକ୍ଷା ଦୁଇଦିନ ଥିଲା । ବିନୀ ତା ସାନ ଭଉଣୀକୁ ପଠାଇ ବୁଝିଲା ଯେ, ଚିନୁ ଗାଁରୁ ଫେରିନି କି କିଛି ଖବର ବି ପଠାଇନି । ପରୀକ୍ଷା ଦିନ ହଲ୍‌କୁ ଯାଇ ଦେଖିଲା ସମସ୍ତେ ଅଛନ୍ତି, କିନ୍ତୁ ଚିନୁର ରୋଲ୍ ନମ୍ବର ଲେଖାଥିବା ଟେବୁଲ ଟି ଖାଲି......

ପରୀକ୍ଷା ପରେ ବିନୀ ଚିନୁର ସାଙ୍ଗମାନଙ୍କୁ ତା ବିଷୟରେ ପଚରା ପଚରି କଲା । କିନ୍ତୁ କେହି କିଛି କହି ପାରିଲେନି । ପରୀକ୍ଷାର ରେଜଲଟ୍ ବାହାରିଲା ବିନୀ ଭଲରେ ପାଶ୍ କଲା । ବାଣୀବିହାରରେ ଏମ୍.ଏ.ରେ ନାଁ ଲେଖାଇଲା । ସେଠି ତା କଲେଜର ଅନେକ ଚିହ୍ନା ପୁଅ ଝିଅଙ୍କୁ ଭେଟିଲା, ସେମାନଙ୍କୁ ଚିନୁ ବିଷୟରେ ପଚାରିଲା କିନ୍ତୁ କେହି କିଛି ଖବର ଦେଇ ପାରିଲେନି । ଶେଷରେ ବିଜୟଠୁ ଚିନୁର ଠିକଣା ନେଇ ତା ସାନଭଉଣୀକୁ ସାଙ୍ଗରେ ଧରି ସେ ଚିନୁର ଗାଁକୁ ଗଲା ।

ନିପଟ ମଫସଲ ଗାଁ । ଗୋଟିଏ ଦୁଇଟି କୋଠାଘର ଛାଡ଼ି ଦେଇ ବାକି ସବୁ ଚାଳଘର । ଏମାନଙ୍କ ଗାଡି ପଛରେ ଗାଁର ପିଲାମାନେ ପାଟିତୁଣ୍ଡ କରି ଦଉଡ଼ିବାକୁ ଲାଗିଲେ । ସମସ୍ତଙ୍କ ଆଖି ବିନୀ ଉପରେ । ସତେ ଯେମିତି ସେମାନେ କିଛି ଗୋଟିଏ ଅଦ୍ଭୁତ ଜିନିଷ ଦେଖୁଛନ୍ତି । ବିନୀକୁ ବଡ ଅପ୍ରସ୍ତୁତ ଲାଗୁଥାଏ । ସେ ଟାଁ ମଝିରେ ଗାଡ଼ିରୁ ଓହ୍ଲାଇ ଜଣେ ବୁଢ଼ା ଲୋକଙ୍କୁ ପଚାରିଲା, "ଆଜ୍ଞା

Digitized by srujanika@gmail.com

କହିପାରିବେ ଏଠି ଯଦୁମଣି ପ୍ରଧାନଙ୍କ ଘର କେଉଁଠି, "ବୁଢ଼ୀ ଜଣକ ତାକୁ ଆବା କାବା ହୋଇ ରହି ଗୋଟିଏ ଦରଭଙ୍ଗା ନୁଆଣିଆ ଚାଳଘରକୁ ଦେଖାଇ ଦେଲା ।

ରିନୀ ସେଇ ଦୁଇ ବଖରିଆ ଘର ପାଖକୁ ଯାଇ ଦେଖିଲା ଯେ ସେଇ ଘରଟି ବାହାରୁ ବନ୍ଦ ଅଛି । ଘର ଅବସ୍ଥାରୁ ବୁଝି ପାରିଲା ଯେ ଏଇ ଘର କେତେ କିଛି ଦିନ ହେବ ପରିତ୍ୟକ୍ତ ଅବସ୍ଥାରେ ଅଛି । ପାଖଘରେ ଜଣେ ମଧ୍ୟ ବୟସ୍କା ମହିଳା ରିନୀକୁ ଲକ୍ଷ୍ୟ କରୁଥିଲେ । ରିନୀ ତାଙ୍କ ପାଖକୁ ଗଲା । ନିଜର ପରିଚୟ ଦେଇ ଚିନୁ ବିଷୟରେ ପଚାରିଲା ।

ସେ ରିନୀକୁ ଚିନୁଘର ବିଷୟରେ ଯାହା କହିଲେ ତାହାହେଲା, ଚିନୁର ସାନ ଭଉଣୀର ବାହାଘର ଠିକ୍ ହୋଇଯାଇଥିଲା । ତାର ବଡ ଭଉଣୀର ବାହାଘର ନେଇ ତା ବାପା ଯଦୁ ପ୍ରଧାନ ଚିନ୍ତିତ ଥିଲେ । ସେ ଚାହୁଁଥିଲେ ଦୁଇଝିଅଙ୍କ ବାହାଘର ଏକା ସାଙ୍ଗରେ ସାରିଦେବାକୁ । କିନ୍ତୁ ବଡ ଭଉଣୀର ବାହାଘର ଯେଉଁଠାରେ ପଡିଥିଲା । ସେମାନେ ଦଶ ହଜାର ଟଙ୍କା ନଗଦ ଡିମାଣ୍ଡ କଲେ । ଚିନୁର ବାପା ଯେତେ ଅନୁନୟ ବିନୟ ହୋଇ କହିଲେ ସେମାନେ ଶୁଣିଲେନି । ଜିଦି ଧରି ବସିଲେ ଯେ, ଦଶ ହଜାର ଟଙ୍କା ଦେଲେ ଯାଇ ବାହାଘର ହେବ । ତାଙ୍କ ଘରୁ କଥାବାର୍ତ୍ତା ସାରି ରାତି ଅଧରେ ଯଦୁ ପ୍ରଧାନ ଘରକୁ ଫେରି ଜ୍ୱରରେ ପଡ଼ିଲେ ଯେ ଆଉ ଉଠିଲେନି । ଟେଲିଗ୍ରାମ ପାଇ ଚିନୁ ଆସିଲା ବେଳକୁ ସବୁ ଶେଷ ହୋଇଯାଇଥିଲା । ଶ୍ରାଦ୍ଧ ଘର ପରେ ପରେ ଚିନୁ ଚାହିଁଲା ଦୁଇ ଭଉଣୀଙ୍କ ବାହାଘର ସାରିଦେବା ପାଇଁ । ବଡ ଭଉଣୀର ପ୍ରସ୍ତାବ ଯେଉଁଠି ଲାଗିଥିଲା ସେଠି ଯାଇ ତାର ଦୁର୍ଦ୍ଦଶା କଥା କହି ନେହୁରା ହେଲା । କିନ୍ତୁ ସେମାନେ ଟଙ୍କା ନପାଇଲେ ବାହାଘର ହେବନାହିଁ ବୋଲି ସେଜ୍‌ଟୋକ୍ ମନା କରିଦେଲେ । ଏଣେ ଗାଁରେ ଚିନୁକୁ ଦେଖେଇ ଶୁଣେଇ କିଏ କେତେ କଥା କହିଲେ । "ଯଦୁ ପ୍ରଧାନ ଖଟି ଖଟି ତା ପୁଅକୁ କଲେଜରେ ପଢ଼ାଉଥିଲା, ଏବେ କୋଉ ପୁଅ ତା ପିଠିରେ ପଡଲା... ।

ଶେଷରେ ଚିନୁ ଜମିବାଡ଼ ବିକି ଘର ବନ୍ଧ ଦେଇ ପଠାଇ ଟଙ୍କା ଯୋଗାଡ଼ କଲା । ଦୁଇ ଭଉଣୀଙ୍କ ବାହାଘର ଯଥାରୀତି ହେଲା କିନ୍ତୁ ଭଉଣୀମାନଙ୍କୁ ବିଦା କରି ସାରିବା ପରେ ଚିନୁକୁ ଆଉ ଗାଁରେ କିଏ ଦେଖିନାହାନ୍ତି । ସେ କୁଆଡ଼େ ଯାଇଛି, କ'ଣ କରୁଛି କେହି ଜାଣି ନାହାନ୍ତି ।

ଛଳ ଛଳ ଆଖିରେ ରିନୀ ଘରକୁ ଫେରି ଆସିଲା । ଇସ୍, ଏତେ ଅଳ୍ପଦିନ ଭିତରେ କେତେ କଣ ଯେ, ହୋଇଗଲା । ଚିନୁ ଏବେ କେଉଁଠି ? କଣ କରୁଥିବ କେଜାଣି ........

Digitized by srujanika@gmail.com

ଏମିତି କେତେ ଦିନ ଚିନୁ କଥା ଭାବିଭାବି ବିନୀ ଅସୁସ୍ଥ ହୋଇଗଲା । ହେଲେ ସେ ବା କଣ କରିପାରିବ ? କାହାକୁ ଏକଥା କହିବ ?

ତାର ବାହାଘର ଠିକ୍ ହୋଇଗଲା । ପାତ୍ରଟି ଇଂଜିନିୟର, ଖାନ୍‌ଦାନୀ ଘର । ବୋଉ ବାପା ଯା ତା ମନୋଜକୁ ପସନ୍ଦିଲେ, କଣ ବା କହିବ ବିନୀ, କାହା ଭରସାରେ……

ଧୁମ୍ ଧାମ୍‌ରେ ତା ବାହାଘର ହୋଇଗଲା ।

× × × ×

ଏହା ଭିତରେ ପାଞ୍ଚ ବର୍ଷ ବିତିଗଲାଣି । ଚିନୁ ଗାଁରୁ ଯେଉଁ ଉଦାସ ମୁହଁ ନେଇ ବିନୀ ଫେରି ଆସିଥିଲା ସେ ମୁହଁରେ ଏ ପର୍ଯ୍ୟନ୍ତ ପ୍ରାଣ ଖୋଲା ହସଟିଏ ଫୁଟି ଉଠିନି । ସ୍ୱାମୀ ତାର ଉଚ୍ଚ ଶିକ୍ଷିତ ସଂଭ୍ରାନ୍ତ କିନ୍ତୁ ମଦ୍ୟପ । ଦିନଯାକ ଅଫିସରେ କାଟେ । ଆଉ ରାତି ଅର୍ଦ୍ଧାଧିକ ସମୟ କଟେ କ୍ଲବରେ । ବିନୀକୁ ନିଜ ଢାଞ୍ଚାରେ ପକାଇବାକୁ ଚେଷ୍ଟା କରି କରି ସେ ବିଫଳ ହେଲା । କ୍ଲବ, ପାର୍ଟି ଇତ୍ୟାଦିରେ ତାର ଆଦୌ ଇଣ୍ଟରେଷ୍ଟ ନାହିଁ । ମନୋଜ କିନ୍ତୁ ସନ୍ଧ୍ୟାବେଳେ ଘରେ ବସି ଟିଭି ଦେଖି ଖୁସି ଗପ କରିବାର ଲୋକ ନୁହେଁ । ତେଣୁ ଦୁଇଜଣ ଯାକ ଦୁଇଟି ସମାନ୍ତରାଳ ରେଳରେଖା ପରି ଗତିକରି ଚାଲିଛନ୍ତି । ମନୋଜ୍ ବହୁତ ଚେଷ୍ଟା କରେ ବିନୀକୁ ଖୁସି କରାଇବା ପାଇଁ । ଶାଢ଼ୀ ଗହଣାରେ ଘର ଭରି ଦିଏ । ସୌଖିନ୍ ଜିନିଷର ଆଡ୍‌ଭଟାଇଜ୍ ଖବର କାଗଜରେ ବାହାରିବା ମାତ୍ରେ ଦୌଡଯାଇ କିଣିଆଣେ ବିନୀ ପାଇଁ । କିନ୍ତୁ ଦିନେ ହେଲେ ତାର ସ୍ତ୍ରୀକୁ ସେ ପ୍ରାଣ ଖୋଲି ହସିବାର ଦେଖିନି । ଐଶ୍ୱରିକ ପ୍ରାଚୁର୍ଯ୍ୟ ଭିତରେ ସେଇ ଚୋଟିଏ ଅଭାବହିଁ ତାଙ୍କୁ ମ୍ରିୟମାଣ କରିଦିଏ ।

ବିନୀର ନିଃସଂଗତା ଆଉ ଅସହାୟତା ତାର ନିତିଦିନିଆ କାର୍ଯ୍ୟକଳାପରେ ପ୍ରତିଫଳିତ ହୁଏ । ଘରର ପୂଜାରୀକୁ ଅଯଥାରେ ଗାଳିଦେବା, ବିନା କାରଣରେ ମନୋଜ ଉପରେ ବିରକ୍ତ ହେବା ତାର ଯେମିତି ଅଭ୍ୟାସରେ ପରିଣତ ହୋଇଗଲାଣି । ଦିନେ ଏମିତି ତାର ଅଲ୍‌ମାରୀ ଘାଣ୍ଟୁ ଘାଣ୍ଟୁ ଚୋଟିଏ ପୁରୁଣା ଫାଇଲି ପାଇଲା । ତାକୁ ଖୋଲି ଦେଖିଲା, ସେଥିରେ ଚିନୁର ହାତ ଲେଖା କବିତା ଗୁଡାକ ଅଛି । ଯେଉଁଗୁଡ଼ିକ କି ସେ ପ୍ରଥମେ ତାକୁ ଶୁଣାଇଥିଲା । ସେଇ କବିତା ଗୁଡିକ ପଢୁ ପଢୁ ବିନୀର କଲେଜ ଜୀବନ ମନେ ପଡ଼ିଗଲା । ସାଥିରେ ତାର ପ୍ରଥମ ଦେଖା; ସେଇ ମଫସଲିଆ, ଚପଲ ଛିଣ୍ଡି ଯିବାରୁ ଯିଏ ହାମୁଡେଇ ହୋଇ ପଡଗଲା !………

Digitized by srujanika@gmail.com

ସେମାନଙ୍କର ସମୁଦ୍ର କୂଳରେ ବୁଲିବା, ଚିନୁର କବିତା ପଢ଼ି ଶୁଣେଇବା, ରିନୀର ଟା ଟା କୁ ଯିବା, ଏମିତି କେତେ ଘଟଣା । ଯେଉଁ ଗୁଡାକୁ ଭୁଲି ଯିବାପାଇଁ ଦୀର୍ଘ ପାଞ୍ଚବର୍ଷ ଧରି ସେ ଚେଷ୍ଟା କରିଆସିଛି ।

ରିନୀ ଭାବିଲା କେଉଁଠି ଥିବ ଏବେ ଚିନୁ । କ'ଣ କରୁଥିବ ? କବିତା ଲେଖୁଥିବ କି ନାହିଁ ? ପତ୍ର ପତ୍ରିକାରେ ତାର ତ ଲେଖା ବାହାରିନି ? ରିନୀ ଠିକ୍ କଲା ଏଇ ଲେଖାଗୁଡାକ ଗୋଟିଏ ବହି ଆକାରରେ ଛପେଇବା ପାଇଁ ମନୋଜକୁ କହିବ । ଜଣେ ଶୁଭକାଂକ୍ଷୀ ଭାବରେ ତାରବି ତ କିଛି ଚିନୁ ପ୍ରତି କର୍ତ୍ତବ୍ୟ ଅଛି ।

ସେଦିନ ରାତିରେ ରିନୀ ମନୋଜକୁ ଦେଇ କବିତା ଗୁଡାକ ଦେଖାଇଲା । କହିଲା ଏଇଗୁଡା ମୋର ଗୋଟିଏ ଦୂର ସମ୍ପର୍କୀୟ ଭାଇର ଲେଖା । ସେ ଅନେକ ଦିନ ହେଲା ଘର ଛାଡ଼ ଚାଲିଯାଇଛି । ଲେଖାଗୁଡାକ ଛପାହେଲେ କାଳେ ସେ ପୁଣି ଫେରି ଆସିବ । ମନୋଜର କବିତା ପଢ଼ିବାରେ ଆଦୌ ଆଗ୍ରହ ନାହିଁ । କିନ୍ତୁ ସେ ଦେଖିଲା ରିନୀକୁ ଖୁସି କରିବା ପାଇଁ ଏଇଟା ହେଲା ଗୋଟିଏ ଭଲ ସୁଯୋଗ । ସେ ସାଙ୍ଗେ ସାଙ୍ଗେ ରାଜି ହୋଇଗଲା । ପର ଦିନ ଗୋଟିଏ ପବ୍ଲିସର ଠିକ୍ କରି ତାଙ୍କୁ କିଛି ଟଙ୍କା ଦେଇ ଏବଂ ବହିଟି ବିକ୍ରି ହେଉ ବା ନହେଉ ସବୁ ଖର୍ଚ୍ଚ ବହନ କରିବାର ଦାୟିତ୍ୱ ନେଇ କବିତା ଗୁଡକୁ ଦେଇ ଆସିଲା । ପବ୍ଲିସରଙ୍କର ଜଣେ ଲୋକ ମଝିରେ ମଝିରେ ରିନୀ ସାଙ୍ଗରେ ବହିର ଗେଟପ୍, କଭର ଡିଜାଇନ୍ ଇତ୍ୟାଦି ବିଷୟରେ ଆଲୋଚନା କରିବାକୁ ଆସେ । ମନୋଜ ଲକ୍ଷ କଲା ରିନୀ ଏସବୁ ଆଲୋଚନାରେ ବେଶ୍ ଇନଭଲଭ୍ ହୋଇଛି । ସେ ମନେ ମନେ ଖୁସି ହୁଏ । ତାକୁ ଲାଗେ ସେ ଯେମିତି ଗୋଟିଏ ଜଟିଳ ଆଲ୍‌ଜେବ୍ରାର ଫର୍ମୁଲା ପାଇ ଯାଇଛି ।

ବହିଟି ପ୍ରକାଶ ପାଇଲା । ମନୋଜ ବେଶ୍ ଜାକ ଜମକରେ ତାର ଉନ୍ମୋଚନ କରଇଲା । ସମାଲୋଚକମାନଙ୍କୁ କ୍ଲବକୁ ଡାକି ଖାଦ୍ୟ ପାନୀୟରେ ଆପ୍ୟାୟିତ କରାଇ ପ୍ରତ୍ୟେକ ଖବରକାଗଜ ପତ୍ର ପତ୍ରିକାରେ ବହିଟିର ପ୍ରଶଂସା କରାଇଲା । ପାର୍ଟି ଦେବାରେ ଏବଂ ଖର୍ଚ୍ଚ କରିବାରେ ମନୋଜର ଉଦାରତା ଯୋଗୁଁ ଅନେକ ସାହିତ୍ୟିକ ସଂପାଦକ ସମାଲୋଚକ ଏବଂ ସମୀକ୍ଷକ ବହିଟି ପ୍ରତି ଆକୃଷ୍ଟ ହେଲେ । ସେଇ ବର୍ଷର କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହେବା ପାଇଁ ଯୋଗ୍ୟ ବିବେଚିତ ହେଲା । ଖବର କାଗଜରେ, ପତ୍ର ପତ୍ରିକାରେ ବହିଟିର ପ୍ରଶଂସା ପ୍ରତି ରିନୀ ଖୁବ୍ ଖୁସି ହେଉଥାଏ । ମନୋଜ ବି ଖୁସି ହେଉଥାଏ ତାର ବୈବାହିକ ଜୀବନର ସଫଳତାକୁ ପ୍ରଥମଥର ପାଇଁ ଅନୁଭବ କରି.. ......

Digitized by srujanika@gmail.com

ଏଣେ ଚିନୁ ଟାଁ ଛାଡ଼ ଟ୍ରେନରେ ଗଉରକେଲା ଚାଲି ଆସିଲା । ବି. ଏ. ପରୀକ୍ଷା ଡ୍ରପ୍ କରିବା, ବାପାଙ୍କର ମୃତ୍ୟୁ, ଜମିବାଡ଼ ବିକିବା ଘରଡ଼ାହ ବନ୍ଧାପକାଇବା ଏମିତି ଗୋଟିଏ ପରେ ଗୋଟିଏ ଦୁର୍ଘଟଣା ଏତେ ଅଳ୍ପଦିନ ଭିତରେ ଘଟିଗଲା ଯେ ସେ କିଛି ଭାବିବାକୁ ସମୟ ପାଇଲାନି । ସେ କାହିଁକି ଗଉରକେଲା ଆସିଲା ସେ [illegible] କେବେ ଫେରିବି, କୋଉଠାଏ ସେ ତାର ଅତୀତ ତାକୁ ଭୁଲେଇ ଦିବାକୁ ଚାହୁଁଥିଲା । ସେ ଚାହୁଁଥିଲା ଗୋଟିଏ ଅପରିଚିତ ପରିବେଶ, ଯେଉଁଠି ସେ ପୁଣିଥରେ ଗୋଟିଏ ନୂଆ ଜୀବନ ଗଢ଼ି ପାରିବ । ଏଣେ ତେଣେ ବୁଲି ବୁଲି ସେ ଗୋଟିଏ ମାଲ୍‌ଗୋଦାମର ବେପାରୀ ପାଖରେ ଗୁମାସ୍ତା ଭାବରେ କାମକଲା । କିନ୍ତୁ ତାର ଅନ୍ୟମନସ୍କତା ଏବଂ ନିର୍ଲିପ୍ତ ସ୍ୱଭାବ ଯୋଗୁଁ ସେ ସେଠି ବେଶିଦିନ ରହିପାରିଲାନି । ତାପରେ ଗୋଟିଏ କଣ୍ଟ୍ରାକ୍ଟର ପାଖରେ କିଛି ଦିନ କାମକଲା । କିନ୍ତୁ ସେଠି ମଧ୍ୟ ତାକୁ ଅଳ୍ପଦିନ ପରେ ବାହାର କରି ଦିଆଗଲା । ତା ପାଖରେ ପଇସା ନଥିଲା କି ଡିଗ୍ରୀ ନଥିଲା ରହିବା ପାଇଁ ଘରଟିଏ ନଥିଲା, କି ଗଉରକେଲାରେ ଜଣେ ହେଲେ କେହି ଚିହ୍ନା ଲୋକ ନଥିଲେ । ଶେଷରେ ସେ ଜଣେ ବିହାରୀ ମାଲିକର ରିକ୍‌ସା ଚଳାଇଲା ।

ଦିନେ ସେ ଗୋଟିଏ ଜଳଖିଆ ଦୋକାନରେ ବସି ଚା ଟପଡ଼ ଦେଉଥିଲା । ଏଇ ସମୟରେ ରେଡ଼ିଓରୁ ଗୋଟିଏ କବିତା ଶୁଣିଲା । ତାକୁ କବିତାଟା କେମିତି ଜଣା ଜଣା ଲାଗିଲା । ତାର ମନେ ପଡ଼ିଲା ଏଇଟାତ ତାର କବିତା, ସେ ଏଇ କବିତାଟା ରିନୀକୁ ଶୁଣାଇଥିଲା । ତେବେ କଣ ରିନୀ·········

ଏହି ସମୟରେ ରେଡ଼ିଓରୁ ଆନାଉନ୍‌ସ୍ ହେଲା ଯେ ଏଇ କବିତାଟି ଏବର୍ଷର କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କାର ପ୍ରାପ୍ତ କବିତା ବହି, "ମନ ସିଂହାସନ"ର ଅନ୍ୟତମ କବିତା ।

ଚିନୁ ସଙ୍ଗେ ସଙ୍ଗେ ରିକ୍‌ସା ନେଇ ଗୋଟିଏ ବହି ଦୋକାନକୁ ଗଲା । ଦୋକାନୀକୁ ପଚାରିଲା " ମନ ସିଂହାସନ" କବିତା ବହି ଅଛି ? ଦୋକାନୀଟି ବେପରୁଆ ଭାବରେ ହଁ କହିଲା । ଚିନୁ କହିଲା ଦାମ୍ କେତେ ? ଏଥର ଦୋକାନୀଟି ବିରକ୍ତି ସ୍ୱରରେ କହିଲା, ୩୫ ଟଙ୍କା । ଚିନୁ ଆଶ୍ଚର୍ଯ୍ୟ ହେଲା । କଣ, ବହିଟାର ଦାମ୍ ୩୫ ଟଙ୍କା । ତାମାନେ, କିଣିବା ପାଇଁ ତାକୁ ଅନ୍ତତଃ ଦଶ ଦିନ ହାଡ଼ଭଙ୍ଗା ପରିଶ୍ରମ କରିବାକୁ ପଡ଼ିବ । ଚିନୁ ଭାବିଲା, ହଉ ପଛେ କିନ୍ତୁ ବହିଟିକୁ କିଣିବାକୁ ପଡ଼ିବ । ଚିନୁ ଲାଗିପଡ଼ି ପ୍ରତିଦିନ ପଇସା ସଂଚିବାରେ ଲାଗିଲା । ଦିନେ ସନ୍ଧ୍ୟାବେଳେ ଷ୍ଟେସନ ପାଖରେ ଗାଡ଼ିକୁ ଅପେକ୍ଷା କରୁ କରୁ ସେ ଗଣି ଦେଖିଲା, ତା ପାଖରେ ତିରିଶ ଟଙ୍କା ଅଛି । ଆଉ ପାଞ୍ଚଟଙ୍କା ହୋଇଗଲେ ସେ ବହିଟି କିଣିବ ।

Digitized by srujanika@gmail.com

ଏଇ ସମୟରେ ତା ପାଖକୁ ବ୍ୟାଗ୍ ଧରି ଜଣେ ଭଦ୍ରଲୋକ ଆସିଲେ। ପଚାରିଲେ ।

"ଟାଉନ୍ ହଲ୍ ଯିବୁ"

ଟିନୁ କହିଲା "ଆଜ୍ଞା, ବସନ୍ତୁ ।"

"କେତେ ନବୁ"

ଟିନୁ କହିଲା ପାଞ୍ଚ ଟଙ୍କା,

ଲୋକଟି କହିଲା "ତିନି ଟଙ୍କା ଆଠଣା ଦେବି ଯିବୁ ।"

ନା ଆଜ୍ଞା ପାଞ୍ଚଟଙ୍କାରୁ କମ୍ ହେଲେ ହବନି । ଲୋକଟି ରିକ୍ସାରେ ବସିପଡ଼ କହିଲା । ହଉ ଚାଲ୍ । ଟାଉନ୍ ହଲ୍‌ରେ ପହଞ୍ଚି ଲୋକଟି ପାଞ୍ଚଟଙ୍କିଆ ନୋଟ୍‌ଟି ବଢ଼େଇ ଦେଇ ଭିତରକୁ ଚାଲିଗଲା । ଟିନୁ ଦେଖିଲା ଟାଉନ୍ ହଲ୍‌ଟା ଖୁବ୍ ସଜା ସଜି ହୋଇଛି । ରିକ୍ସା ବୁଲାଇଲା ବେଳେ ଗେଟ୍ ଆଡେ ଚାହିଁ ଦେଖିଲା ବାନରରେ ଲେଖା ହୋଇଛି...

"ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ" "ମନ ସିଂହାସନ"ର ସମ୍ବର୍ଦ୍ଧନା ସଭ" । ସେ ଆଶ୍ଚର୍ଯ୍ୟ ହୋଇଗଲା । ଭାବିଲା କିଏ କାହାକୁ ସମ୍ବର୍ଦ୍ଧନା ଦେବ ? ଭିତରକୁ ଯିବାବେଳେ ବାହାରେ ଜଗିଥିବା ପୋଲିସ୍ ତାକୁ ଧମକ ଦେଇ ବାହାର କରିଦେଲେ ।

"ଚିଫ୍ ମିନିଷ୍ଟର ପ୍ରୋଗ୍ରାମ, ଶଳା ଭିତରକୁ ପଶିଯାଉଛି ।" ଟିନୁ ବାହାରେ ଏପଟ ସେପଟ ବୁଲି ବୁଲି ଦେଖିଲା ଚାରିପଟେ ଭିଡ ବାଡ ଘେରା ହୋଇଛି । ଖୋଜି ଖୋଜି ଗୋଟିଏ ଭିଡ ଫାଙ୍କରେ ଦେଖିଲା ମୁଖ୍ୟମନ୍ତ୍ରୀ ଠିଆ ହୋଇଛନ୍ତି । ତାପରେ କାହା ନା ଗୋଟିଏ ଡକାହେଲା । ଜଣେ ସୁଟ୍ ପରିହିତ ଲୋକ ମଞ୍ଚ ଉପରକୁ ଉଠିଯାଇ କରତାଳି ଗହଣରେ ପୁରସ୍କାର ଗ୍ରହଣ କଲେ । ସେ ଫେରିଆସି ତାଙ୍କ ପାଖରେ ବସିଥିବା ଭଦ୍ରମହିଳାଙ୍କୁ ପୁରସ୍କାରଟି ଦେଇଦେଲେ ।

ଟିନୁ ଏତେ ଦୂରରୁ ବି ରିନୀକୁ ଠିକ୍ ଚିହ୍ନି ପାରିଲା ।

ରିନୀ ଖୁବ୍ ହୃଷ୍ଟ ଦେଖାଯାଉଥିଲା ।

ତାର ମନେ ପଡ଼ିଗଲା ଡାଲିଁସ୍ ଜମନା ବୁମ ଆଗରେ ରିନୀ ସହିତ ତାର ପ୍ରଥମ ପରିଚୟ ଦିନର ଘଟଣା । ତାକୁ ଲାଗିଲା ସେଇ ଝିଲି ଝିଲି ହସଟା ଯେମିତି ଏବେବି ତା ଓଠରେ ଲାଗି ରହିଛି ।... .....

●

Digitized by srujanika@gmail.com

# ପାଖଲୋକ

ମନ୍ତ୍ରୀମଣ୍ଡଳ ଭଙ୍ଗିଲେ କି ବଦଳିଲେ, ଆମମାନଙ୍କ କି ବଜାର ଦରରେ କିଛି ପରିବର୍ତ୍ତନ ହୁଏନି । ତେଣୁ ଏଇ କେତେଦିନ ଧରି ଖବର କାଗଜରେ ମନ୍ତ୍ରୀମଣ୍ଡଳ ଭଙ୍ଗିବ ଅମୁକେଇ ଯିବେ, ସମୁକେଇ ମୁଖ୍ୟମନ୍ତ୍ରୀ ହେବେ ଏମିତି କେତେ କ'ଣ ଖବର ବାହାରୁଥିଲେ ମଧ୍ୟ ମୋର ସେ ଆଡକୁ ନିଘା ନଥାଏ । କିନ୍ତୁ ଦିନେ ସକାଳୁ ଦାନ୍ତଟା ଘସି ଚା' କପଟା ଧରି ବସିଛି ପଡ଼ଶା ଘରର ଦାସବାବୁ ଆସି ପହଞ୍ଚିଲେ । କହିଲେ ଆଜ୍ଞା ଶୁଣିଲେଣି କାଲି ମନ୍ତ୍ରୀମଣ୍ଡଳ ଭଙ୍ଗିଗଲା । ଏବେ ଗଦାଧର ମହାପାତ୍ର ମୁଖ୍ୟମନ୍ତ୍ରୀ ହେବେ । ଆମ ଇନ୍ଦୁ ଭଇନା ବି କ୍ୟାବିନେଟ୍-ମନ୍ତ୍ରୀ ହେବାର ଶୁଣାଯାଉଛି । ମୁଁ କହିଲି, ''କିହୋ କୋଉ ଇନ୍ଦୁ ଭଇନା ?'' ଦାସବାବୁ କହିଲେ ଇଏ ଆମ ଇନ୍ଦୁମଣୀ ଦାସ । ସିଏ ମୋ ନିଜ କକେଇ ଝିଅ ଭଉଣୀ କୁନିକୁ ବାହାହୋଇ ନାହାନ୍ତି ? ଏଇ ଆମ ଘରକୁ କେତେଥର ଏଠିକି ଆସିଛନ୍ତି । ମୁଁ ମନେ ମନେ ଭାବିଲି ଆସିଥିବେ, କିଏ ଜାଣିଛି ।

ସେଦିନ ଅଫିସ୍‌ରେ ମଧ୍ୟ ସରଗରମ ବାତାବରଣ । ଅମୁକେଇ ମନ୍ତ୍ରୀ ହେବେ, ସମୁକେଇ ତାଙ୍କ ପ୍ରାଇଭେଟ ସେକ୍ରେଟେରୀ ହେବାପାଇଁ ନାକେଇଛନ୍ତି । ଏଇ ବିନୋଦବାବୁ ମନ୍ତ୍ରୀ ହେଲେ, ଏଥର ପଣ୍ଡାବାବୁଙ୍କ ପ୍ରମୋସନ୍ ଥୁଆ, ଅଫିସ୍‌ରୁ ଫେରିଲା ବେଳେ ଦେଖିଲି ଆମ ଘର ଆଗ ରିକ୍‌ସାବାଲା ବସ୍ତି ଆଗରେ ଦାସବାବୁଙ୍କ ସ୍ତ୍ରୀ ଅଣ୍ଟାରେ ଲୁଗା ଭିଡ଼ି ପାଟି କରି କହୁଛନ୍ତି—ମନ୍ତ୍ରୀମଣ୍ଡଳଟା ଶପଥ ନେଇଯାଉ, ଇନ୍ଦୁଭଇନାଙ୍କୁ କହି ତମ ବସ୍ତି ଏଠୁ ନ ଭଙ୍ଗିଛି··· । ବୁଝୁ ବୁଝୁ କ'ଣନା ଖାସବାବୁଙ୍କ ଗାଈ ଫିଟିଯାଇ ରିକ୍‌ସାବାଲା ବସ୍ତିର କାହାଘର ଚଳ ଓଟାରି ଖାଉଥିଲା । ତାକୁ କିଏ ବାଡେଇଲାରୁ ଏମିତି କାଣ୍ଡ ହୋଇଛି ।

ସତକୁ ସତ ଦୁଇ ତିନିଦିନ ପରେ ଖବର କାଗଜରେ ବାହାରିଲା ଇନ୍ଦୁବାବୁ କୃଷି ବିଭାଗର ମନ୍ତ୍ରୀ ହୋଇଛନ୍ତି । ଦିନେ ଦେଖିଲା ବେଳକୁ ଦାସ ବାବୁଙ୍କ ଘର ବାହାରୁ ତାଲା ପଡିଛି । ତା ପରଦିନ ସନ୍ଧ୍ୟାବେଳେ ଦାସବାବୁ ସପରିବାରେ ରିକ୍‌ସାରୁ ଓହ୍ଲାଉଛନ୍ତି । ପଚାରିଲି କ'ଣ ଆଜ୍ଞା ଗାଁକୁ ଯାଇଥିଲେ ? ଦାସବାବୁ କହିଲେ ''ନାଇଁ ଭାଇ ଏଇ ଇନ୍ଦୁ ଭଇନାଙ୍କ ଘର ଆଡେ ବୁଲି ଯାଇଥିଲୁ ଯେ ସେ କ'ଣ ଆଉ ଛାଡନ୍ତେ, ଦୁଇଦିନ ପରେ ଆଜି ବଡ କଷ୍ଟରେ ବାହାରି କରି ଆସିଲୁ ।

ମୁଁ କହିଲି ''ମନ୍ତ୍ରୀଙ୍କ ଘରେ ଥିଲେ, ଖାନାପିନା କେମିତି ହେଲା ?

Digitized by srujanika@gmail.com

ଦାସବାବୁ କହିଲେ କାହିଁକି କହୁଛନ୍ତି ଆଜ୍ଞା ଯୋଉମାନ୍ଥ ।

କିଛିଦିନ ପରେ ଦାସ ବାବୁଙ୍କର ଝିଅ ବାହାଘର ଠିକ ହୋଇଗଲା । ଦାସବାବୁ ମୋ ସାଙ୍ଗରେ ସ୍କୁଟର ପଛରେ ବସି ମେଣ୍ଟେନାସ ଅଫିସ ଯାଇ କହିଲେ କୃଷି ମନ୍ତ୍ରୀଙ୍କ ଝିଆରୀ ବାହାଘର ହେବ ଯେ ବେଦୀଟା କରିଦେବେ । ପି. ଡବ୍ଲ୍ୟୁ.ଡ ଅଫିସ୍ ଯାଇ କହିଲେ ଇନ୍ଦ୍ରବାବୁଙ୍କ ଝିଆରୀ ବାହାଘର ଯେ ପାଣି ଗାଡ଼ିଟା ପଠାଇବେ । ସମସ୍ତ ଏମିତି ବାନ୍ଧାଧରିଟା ଭଲରେ ଭଲରେ ହୋଇଗଲା । ଖାଲି ବରଯାତ୍ରୀମାନେ ଦରାନରା ବିଷୟରେ ଫୁଟୁରୁ ଫାଟର ହେଉଥିଲେ, ସନ୍ଧ୍ୟାବେଳେ ଇନ୍ଦ୍ରବାବୁ ପଞ୍ଚାଶି ପିବାପରେ ସବୁ ଚୁପ୍ ।

ଆଉଦିନେ ଦେଖିଲି ବେଳକୁ ଦାସବାବୁ ପୋଲିସ ଗାଡ଼ିରେ ବୁଲୁଛନ୍ତି । ମୁଁ ପଚାରିଲି କିହୋ ଦାସବାବୁ ପୋଲିସ ଗାଡ଼ିରେ କୁଆଡେ ? ସେ କହିଲେ "କ'ଣ ଶୁଣିବେ ଆଜ୍ଞା, ଲକ୍ଷ୍ମୀ ଭଜନା ଗୋଟିଏ ଯାଗା କିଣିଥିଲେ, ଘର କରିବେ ବୋଲି, ସେଠି ଆଗରୁ କିଏ ଗଳିଆ କରିଥିଲା । ଏବେ ସେମାନେ କହୁଛନ୍ତି ଆମେ ଆଉ ସେଠୁ ଉଠିବୁନି । ଏଠି ଆମ ତିରିଶ ବର୍ଷର ଭିଟାମାଟି । ଏବେ ଯାଉଛି ପୋଲିସ ଲଗାଇ ତାଙ୍କୁ ବାହାର କରିବି ।"

ସେଦିନଠୁ ପନ୍ଦର କୋଡ଼ିଏ ଦିନ ପର୍ଯ୍ୟନ୍ତ ଦାସବାବୁଙ୍କ ଘର ଆଗରେ ପ୍ରତିଦିନ ସନ୍ଧ୍ୟାରେ ଦଳେ ଟୋକା ଆସି ଗାଳିଗୁଲଜ କରି ଯାଆନ୍ତି । ଧମକାଇ ଥାଆନ୍ତି ଯେ ମନ୍ତ୍ରୀମଣ୍ଡଳ ଭାଙ୍ଗିବା ଦିନ ଦାସବାବୁଙ୍କୁ ଦେଖି ନେବେ । ଦାସବାବୁଙ୍କ ଘରଲୋକେ ସନ୍ଧ୍ୟା ପରେ ଘରବାହାରକୁ ବାହାରନ୍ତି ନାହିଁ ।

ଏଇ ଘଟଣାଟା ଆମ ପାହିରେ ବେଶ୍ ହଇଚଇ ପକାଇଦେଲା । ପରେ ଶୁଣିଲି ଦାସବାବୁ ଏଠିକା ଅମ୍ବିକା କ୍ଲବରେ ମେମ୍ବର ହୋଇ ଟୋକାମାନଙ୍କୁ ବିଭାଗ କରିଦେଲେ । ତାପରେ ଟୋକାମାନେ ନିଜନିଜ ଭିତରେ ବାଡ଼ଆ ବାଡ଼ି ହୋଇ ଡାକ୍ତରଖାନାରେ ପଡ଼ିଲେ । ଶୁଣିବାକୁ ମିଳିଲା ଯେ ନେତାମାନଙ୍କ ଘରକୁ କୁଆଡେ ଇନ୍ଦ୍ରବାବୁ ମାଛ, ମିଠା ଇତ୍ୟାଦି ଗାଡ଼ିରେ ପଠାନ୍ତି ।

ଦିନେ ଦାସବାବୁ ଆସି ମୋତେ ସ୍କୁଟର ଦାମ୍, କେମିତି କିଣାହେବ ସବୁ ପଚାରୁଥିଲେ । ମୁଁ କହିଲି ଆଜ୍ଞା ଇନ୍ଦ୍ରବାବୁଙ୍କୁ କହି କୋଉ ଏମ୍.ପି.ଙ୍କ କୋଟାରେ ବାଜାଜଟିଏ ଆଣୁ ନାହାନ୍ତି । ଶସ୍ତା ପଡ଼ିବ, ଭଲ ଜିନିଷ ପାଇବେ । ଦାସବାବୁ କହିଲେ ଛାଡ଼ନ୍ତୁ ଆଜ୍ଞା ବଡ଼ଲୋକିଆ କଥା । ଆମ ପାଇଁ କିଏ କଣ କଲାଣି ।

ଆଉଥରେ ତାଙ୍କ ସାଙ୍ଗରେ ଦେଖାହୋଇଗଲା ହାଟରେ । ମାଛ କିଣୁଥିଲେ । ମତେ ଦେଖି କହିଲେ "କଣ ଆଉ ମାଛ ଖାଇବା ଆଜ୍ଞା କିଲୋତ ଚବିଶି, ପଚିଶିରୁ

Digitized by srujanika@gmail.com

ଜମୁନି । ମୁଁ କହିଲି ଆପଣ କାହିଁକି ମାଛ କିଣୁଛନ୍ତି କି? ଗୃହିଣୀ ଯାଉ ନାହାନ୍ତି ପିଲାମାନଙ୍କୁ ନେଇ ଇନ୍ଦୁ ଭାଇନାଙ୍କ ଘରକୁ । ଦାସବାବୁ ବ୍ୟାଗ୍‌ରେ ମାଛ ରଖୁ ରଖୁ କହିଲେ "ନିଜ ଘରର ଶାଗଭାତ ଭଲ" ।

ଦାସବାବୁଙ୍କ ସ୍ତ୍ରୀ ଦିନେ ଆମ ଘରେ କହୁଥିଲେ ଦାସବାବୁଙ୍କ ହାକିମ କୁଆଡେ ତାଙ୍କୁ ଭରି ହଇରଣ କରୁଛନ୍ତି । କହୁଛନ୍ତି ଦେଖିବା କୋଉ ଇନ୍ଦୁବାବୁ ତାଙ୍କ ପିଠିରେ ପଡତେ । ଏଣେ ଇନ୍ଦୁବାବୁ ବି କୁଆଡେ ଧରନ୍ତୁଅଁ ଦେଉନାହାନ୍ତି ।

ଆଉଦିନେ ଅଫିସରେ ପହଞ୍ଚି ଦେଖିଲି ବାତାବରଣ ଗରମ । ମନ୍ତ୍ରୀମଣ୍ଡଳ ଭାଙ୍ଗିଲା । ପୁଣି ସେଇ ଗଦାବାବୁ ଗଲେ ଯଦୁବାବୁ ହେବେ । ଅମୁକେଇ ମନ୍ତ୍ରୀ ହେଲେ । ସମୁକେଇ ପ୍ରାଇଭେଟ ସେକ୍ରେଟେରୀ ହେବ । ଚୋର ଦେଇ ଘରକୁ ଫେରୁ ଫେରୁ ଡେରି ହୋଇଗଲା । ଘରେ ପହଞ୍ଚୁ ପହଞ୍ଚୁ ଖବର ପାଇଲି ଅଫିସରୁ ଫେରନ୍ତା ବାଟରେ ଦାସ ବାବୁଙ୍କୁ କିଏ ଏସବୁ ବାଡେଇଛନ୍ତି । ଦାସବାବୁ ଲହୁ ଲୁହାଣ ହୋଇ ଡାକ୍ତର ଖାନାରେ । ମୁଁ ସାଙ୍ଗେ ସାଙ୍ଗେ ଡାକ୍ତରଖାନା ଗଲି । ଦାସବାବୁଙ୍କ ହାତଗୋଡ ବ୍ୟାଣ୍ଡେଜ ହୋଇଥିଲା । ତାଙ୍କୁ ସାଲାଇନ୍ ଦିଆଯାଉଥିଲା । ଚେତା ଫେରିବାରୁ ସେ କହିଲେ ଟିକିଏ ଇନ୍ଦୁବାବୁଙ୍କୁ ଖବର ଦିଅ ।

ମୁଁ ସାଙ୍ଗେ ସାଙ୍ଗେ ଇନ୍ଦୁବାବୁଙ୍କୁ ଟେଲିଗ୍ରାମ କଲି । ଗୋଟିଏ ଲୋକଠାଇ ଖବର ଦେଲି । ଇନ୍ଦୁବାବୁ ସେଇ ଲୋକ ହାତରେ କିଛିଫଳ ଆଉଗୋଟିଏ ଫୁଲତୋଡା ପଠେଇ ଦେଲେ । ଚିଠିରେ ଲେଖିଲେ ମୁଣ୍ଡ ଉପରେ ଇଲେକ୍‌ସନ । ମୁଁ ବର୍ତ୍ତମାନ ଯାଇ ପାରିବି ନାହିଁ ।

ଏମିତି କେତେଦିନ ଗଲା । ଦାସବାବୁ ଘରକୁ ଆସି ଅଫିସ କଚେରୀ ଗଲେ । ହଠାତ୍ ଦିନେ ଦାସବାବୁ ସକାଳୁ ଆସି ଆମ ଘରେ ହାଜର । କହିଲେ ଜାଣିଛନ୍ତି କାଲି ଇନ୍ଦୁବାବୁ ଆସିଥିଲେ । କହିଦେଇ ଯାଇଛନ୍ତି ଆସନ୍ତା ପନ୍ଦର ତାରିଖରେ ଭୋଟ ଦିଆହେବ । ଆମେସବୁ କୁଆଡେ ଯିମିତି ହେଲେ ଯିବୁ ।

ମୁଁ ପଚାରିଲି କଣ ଆପଣମାନେ ସତରେ ଗାଁକୁ ଯିବେ ଭୋଟ ଦେବାପାଇଁ ।

ଦାସବାବୁ କହିଲେ "କିକଥା କହୁଛନ୍ତି ଇନ୍ଦୁଭାଇନା ମୋ ନିଜ କକେଇ ଝିଅ ଭଉଣୀ କୁନିର ବରଟି । ଆମେ ତାଙ୍କୁ ଭୋଟ ଦେବୁନି ତ ଆଉ କିଏ ଭୋଟଦେବ" ।

ଏଇ ଅଳ୍ପଦିନ ତଳେ ସକାଳୁ ଦାସବାବୁଙ୍କ ସ୍ତ୍ରୀ ତାଙ୍କ ଗଉଡକୁ କହୁଥିବାର ଶୁଣିଲି "ଏଥର ମନ୍ତ୍ରୀମଣ୍ଡଳ ଗଢାହେଉ, ଇନ୍ଦୁଭାଇନାଙ୍କୁ କହି ତୋ ପାଇଁ ଲୋନ୍ କରେଇ ଦେବି ଯେ ଜର୍ସି ଗାଈଟିଏ କିଣିଦବୁ" ।



Digitized by srujanika@gmail.com

# ଦୁର୍ଘଟଣା

ଯିଶୁ ମରିଗଲା ! ମରିଗଲା, ମାନେ ତାକୁ ମାରିଦିଆଗଲା । ମରିଗଲା ଭଲ ହେଲା । କାରଣ ସେ ତାଳ ଦେଇ ଚାଲିବା ଶିଖି ନଥିଲା । ସେ ଜାଣି ନଥିଲା ଯେ ଦ୍ରୁତଗାମୀ ରାଜପଥରେ ଦ୍ରୁତ ଗତିରେ ଚାଲିବାକୁ ହୁଏ । ଏଥିରେ ଧୀରେ ଚାଲିଲେ ଆଗରୁ ପଛରୁ ଧକ୍‌କା ଲାଗିବାର ଭୟ ଥାଏ ।

ଯୀଶୁ, ପୁରା ନାଁ ଯଶୋବନ୍ତ ପଟ୍ଟନାୟକ । ମୁଁ ଅଷ୍ଟମ ଶ୍ରେଣୀରେ ପଢ଼ିଲାବେଳେ ବାପାଙ୍କର କଟକରୁ ଢେଙ୍କାନାଳ ଟ୍ରାନ୍‌ସଫର ହେଲା । ଆଉ ମୁଁ ଢେଙ୍କାନାଳର ବି.ବି. ହାଇସ୍କୁଲରେ ନାଁ ଲେଖାଇ ଯେଉଁମାନଙ୍କ ସାଙ୍ଗରେ ପ୍ରଥମେ ସାଙ୍ଗ ହୋଇଥିଲି ସେମାନଙ୍କ ଭିତରେ ଯୀଶୁ ଜଣେ । ତା ବାପା ଦର୍ଶନ ଶାସ୍ତ୍ରରେ ପ୍ରଫେସର ଥିଲେ । ରିଟାୟାର ପରେ ଆସି ନିଜ ଘରେ, ମାନେ ଢେଙ୍କାନାଳରେ ରହୁଥିଲେ । କିନ୍ତୁ ପରେ ପରେ ଗୋଟିଏ ବେସରକାରୀ କଲେଜରେ ଅଧ୍ୟକ୍ଷ ହୋଇ ଆଉ ଗୋଟିଏ ଜାଗାକୁ ଚାଲିଗଲେ । ତାଙ୍କ ପରିବାର କିନ୍ତୁ ଢେଙ୍କାନାଳରେ ରହିଲେ । ଯୀଶୁ ବି.ବି. ହାଇସ୍କୁଲରେ ପଢୁଥିଲା ଆଉ ପରେ ଅଷ୍ଟମ ଶ୍ରେଣୀ ଠାରୁ ମୁଁ ମଧ୍ୟ ଆସି ତା'ର ସହପାଠୀ ହେଲି । ସ୍କୁଲର ଅନ୍ୟପିଲାମାନଙ୍କର ଆଗରେ ଯୀଶୁର ଖାତିର ଥିଲା । କାରଣ ଅଷ୍ଟମ ଶ୍ରେଣୀରୁ ସେ ସ୍କୁଲର ଡିବେଟ ଚାମ୍ପିୟାନ । କିନ୍ତୁ ତାର ଖାତିର ବଢ଼ିବାର ମୂଳ କାରଣ ହେଲା, ସେ ଜଣେ ଆଦର୍ଶ ଛାତ୍ର । ସେ ଅନ୍ୟମାନଙ୍କଠାରୁ ପୁରାପୁରି ଅଲଗା । ସେ ଚୋଟାଏ ହେଲେ କ୍ଲାସ ମିସ୍ କରେ ନାହିଁ । କେବେ ମିଛ କହେ ନାହିଁ । ସିନେମା ଦେଖିବାକୁ ଯାଏ ନାହିଁ । ଏସବୁ ସତ୍ତ୍ୱେ ସେ ତା ଗୋଷ୍ଠୀର ଅନ୍ୟ ଛାତ୍ରମାନଙ୍କଠାରୁ ଅଲଗାଥିଲା । କାରଣ ସେ ସମସ୍ତଙ୍କ ସାଙ୍ଗରେ ବେଶ୍ ଭଲଭାବରେ ମିଶିପାରୁଥିଲା । ଆଉ ପାଠ ବହି ଅପେକ୍ଷା ଗୀତା, ବିବେକାନନ୍ଦଙ୍କ ରଚନାବଳୀ ବେଶୀ ପସନ୍ଦ କରୁଥିଲା । କେଜାଣି କେମିତି ଆମେ ଦୁହେଁ ସମ୍ପୂର୍ଣ୍ଣ ଭିନ୍ନ ଗୋଷ୍ଠୀର ହେଲେ ବି ଆମ ଭିତରେ ବେଶ୍ ଜମି ଯାଇଥିଲା । ପ୍ରତିରବିବାର (ଯେଉଁ ଦିନ ମୋର କ୍ରିକେଟ ମ୍ୟାଚ୍ ନଥାଏ) ମୁଁ ପ୍ରାୟ ତାଙ୍କ ଘରେ କଟାଏ ।

ଆମ ଭିତରେ ଅନେକ କଥା ପଡେ । ଆଉ ସବୁ କଥାକୁ ବିଶ୍ଳେଷଣ କଲାବେଳେ ଯୀଶୁ ବେଶ୍ ଇନ୍‌ଭଲ୍‌ଭ ହୋଇଯାଏ । ଗୀତା, ବେଦ ଇତ୍ୟାଦିରୁ

Digitized by srujanika@gmail.com

ଉଦାହରଣ ଦିଏ । ତା ସହିତ ଟୁକି ଜଳଭଳିଆ ଚିଜ ଆମ ଭିତରେ କେହି ନଥାନ୍ତି । ତେଣୁ ଆମେ ସବୁ ଶ୍ରୋତା ପାଲଟି ଯାଉ । ତାର ସବୁ ଭାଷଣର ସାରାଂଶ ପ୍ରାୟତଃ ଏଇଆ ଯେ ଲୋକମାନେ ଭଗବାନଙ୍କଠାରୁ ଆସ୍ଥା ହରେଇଥିବାରୁ ଆଜିକାଲି ବିଭିନ୍ନ ପ୍ରକାର ବିପଦ ଦେଖା ଦେଉଛି । ଲୋକମାନେ ବିବେକ, ନୈତିକତା ଇତ୍ୟାଦି ହରେଇ ବସିଛନ୍ତି । ଲୋକମାନଙ୍କ ମନରେ ଈଶ୍ୱରପ୍ରୀତି ଜଗା ଯାଇପାରିଲେ ସତ୍ୟଯୁଗ ଲେଉଟି ଆସି ପାରିବ ଇତ୍ୟାଦି...ଇତ୍ୟାଦି ।

ପିଲଟି ଦିନରୁ ମୋର ଡାକ୍ତର ହେବାର ଭାରି ଝୁଙ୍କ ଥିଲା । ତେଣୁ ଭବିଷ୍ୟତ କଥା ପଡ଼ିଲେ ମୁଁ ଆଗ୍ରହର କହେ ମୁଁ ଡାକ୍ତର ହେବି । ରୋଗୀମାନଙ୍କ ସେବା କରିବି । ରୋଜଗାରକୁ ରୋଜଗାର ହେବ ଆଉ ଜନକଲ୍ୟାଣ ମଧ୍ୟ କରିହେବ । କିନ୍ତୁ ଯୀଶୁ ମତରେ ରୋଗୀ ସେବା କରିବା ହେଲା ସାମୁହିକ ଜନକଲ୍ୟାଣ । ଏଇଟା ଠିକ୍ ଭିକାରୀକୁ ପଇସା ଦେଲାପରି । କିଛି ପଇସା ଦେଇ ଭିକାରୀକୁ ଆଜି ଅନାହାରରୁ ବଞ୍ଚାଇ ଦିଆଯାଇ ପାରେ । କିନ୍ତୁ ତାହା ସମସ୍ୟାର ସମାଧାନ କରି ହେବ ନାହିଁ । ତେଣୁ ଯୀଶୁର ଇଚ୍ଛା ସେ କିପରି ଲୋକଙ୍କ ମନରେ ଈଶ୍ୱର ପ୍ରୀତି ଜଗାଇବ । ସନ୍ୟାସୀ ହେବ, ଘରଦ୍ୱାର ଛାଡ଼ ଆଶ୍ରମରେ ରହିବ, ଆଉ ବୁଲି ବୁଲି ଲୋକଙ୍କ ମତରେ ଭକ୍ତିଭାବ ସୃଷ୍ଟି କରଇବ । ତା କଥା ଶୁଣି ସମସ୍ତେ ହସୁଥିଲୁ ।

ମାଟ୍ରିକ ପରୀକ୍ଷା ପରେ ମୁଁ କଟକ ରେଭେନ୍ସା କଲେଜରେ ଆଡ୍‌ମିସନ୍ ନେଲି । ବାପାଙ୍କର ମଧ୍ୟ ଗଉର କେଲ ଟ୍ରାନ୍ସଫର ହୋଇଗଲା । ସେଦିନଠାରୁ ଆଜି ପର୍ଯ୍ୟନ୍ତ କେବେ ଢେଙ୍କାନାଳ ଯାଇ ନାହିଁ । କଟକରେ ଅଡ୍‌ମିସନ ନେଇ ଯୀଶୁ ପାଖକୁ ଖଣ୍ଡେ ଦିଖଣ୍ଡ ଚିଠି ଦେଇଥିଲି, ଉତ୍ତର ପାଇ ନଥିଲି ।

ରେଭେନ୍ସା କଲେଜରେ ଦୁଇ ବର୍ଷ । ତାପରେ କଟକ ମେଡ଼ିକାଲ କଲେଜରେ ଛଅ ବର୍ଷ । ତାପରେ ଚାକିରୀ, ତାପରେ ବାହାଘର । ଚିନୁର ଜନ୍ମ । ଏମିତି ନୂଆ ନୂଆ ଘଟଣାର ଚାପରେ ଯୀଶୁ ମୋର ସ୍ମୃତି ରଡ଼ରେ ଦ୍ରୁତ ପଛରେ ରହିଯାଇଥିଲା । କିନ୍ତୁ ହଠାତ୍ ଦିନେ ମୁଁ ପୁଣିଥରେ ଯୀଶୁକୁ ଆବିଷ୍କାର କଲି ।

ମୋର ଯେଉଁ ସହରରେ ମେଡ଼ିକାଲ ଅଫିସର ହୋଇ ପୋଷ୍ଟିଂ ହୋଇଥାଏ ସେଇ ସହରପାଖ ଏକ ଗାଁରେ ଗୋଟାଏ ବଡ଼ ମେଳା ଲାଗିଥାଏ । ମୁଁ ଗୋଟାଏ ମେଡ଼ିକାଲ ଇଉନିଟ୍ ନେଇ ସେଠି କ୍ୟାମ୍ପ ପକେଇଥାଏ । ଦିନେ ଏମିତି ମେଳା ଭିତରେ ବୁଲୁ ବୁଲୁ କେତେ ଜଣ ସନ୍ୟାସୀଙ୍କୁ କୀର୍ତ୍ତନ କରୁଥିବାର ଦେଖିଲି । ପାଖକୁ ଯିବାରୁ ସେମାନଙ୍କ ଭିତରୁ ଜଣକ ମୁହଁ ଚିହ୍ନା ଚିହ୍ନା ଲାଗିଲା । ଯୀଶୁ ବି ଚିହ୍ନି ପାରିଲା । ଅଳ୍ପ ସମୟ କଥାବାର୍ତ୍ତା ପରେ ମୁଁ ତାକୁ ମୋ ଘରକୁ ଯିବାକୁ ଡାକିଲି । ସେ ବହୁତ କଷ୍ଟରେ ରାଜି ହେଲା ।

Digitized by srujanika@gmail.com

ସେଦିନ ରାତିରେ ଯୀଶୁ ସାଙ୍ଗରେ ବହୁତ କଥାବାର୍ତ୍ତା ହୋଇଥିଲା ଆଉ ମୋର ଧାରଣା ହେଲା ଧୀର ପାଣି ପଥର କାଟେ ସୂତ୍ରରେ ଯୀଶୁ ମଧ୍ୟ ତାର ସାଧନାରେ ଲାଗିଛି । ସେଇ ଅଳ୍ପ ସମୟ ଭିତରେ ମତେ ସେ ବେଶ୍ ପ୍ରଭାବିତ କରିଯାଇଥିଲା ।

ତା ପରଦିନ ମୁଁ ଜଳଖିଆ ଖାଇ ଉଆର୍ଡ୍ ଭିଜିଟ୍ ପାଇଁ ଚାଲିଗଲି । ଯୀଶୁ ମୋର ଦୁଇବର୍ଷର ପୁଅ ଚିନୁକୁ ନେଇ ବୁଲି ବାହାରିଲା । ବସ୍‌ଷ୍ଟାଣ୍ଡ ପାଖରେ ଚକୋଲେଟ୍ କିଣିଲା ବେଳେ ଲୋକମାନେ ତାକୁ ସନ୍ଦେହ କଲେ । ଚିନୁକୁ ଏଠାରେ ବହୁତ ଲୋକ ଚିହ୍ନନ୍ତି । ଏଇ ସହରର ଅଧିକାଂଶ ଲୋକ ମୋର ପେସେଣ୍ଟ । କଲେଜ ପିଲାଙ୍କର ମୋ ପାଖରେ କାମ । କାରଣ ପର୍‌ସେଣ୍ଟେଜ୍ ସର୍ଟ୍ ହେଲେ ମୁଁ ମେଡ଼ିକାଲ୍ ସାର୍ଟିଫିକେଟ ଦିଏ । ସାହି ଦା' ଦା'ମାନେ ମତେ ମାନନ୍ତି । କାରଣ ଯାତ୍ରାଥିଏଟର ହେଲେ ଚନ୍ଦାଖାତା ମୋ ପାଖରେ ବହିନି ହୁଏ । ତେଣୁ ଚିନୁକୁ ଗୋଟେ ବାବାଜୀ ସାଙ୍ଗରେ ଦେଖି ତାକୁ ଗୋଟାଏ ପିଲା ଚୋର ବୋଲି ଭାବିନେଲେ ।

ମୋ ପ୍ରତି ତାଙ୍କ କୃତଜ୍ଞତା ଦେଖାଇବାକୁ ହଉ, ବା ପିଲାଚୋରକୁ ସାବାଡ଼ କରିବାକୁ ହଉ, ସେମାନେ ଯୀଶୁକୁ ଖୁବ୍ ପିଟିଲେ । ଆଉ ଘଟଣା ସ୍ଥଳରେ ପୋଲିସ୍ ପହଞ୍ଚିବା ଆଗରୁ ତାର ମୃତ୍ୟୁ ହେଲା । ଖବରପାଇ ମୁଁ ପହଞ୍ଚିଲା ବେଳକୁ ପୋଲିସ୍ ସେଠାରେ ପହଞ୍ଚି ଯାଇଥିଲେ । ମତେ ଦେଖି ଇନିସ୍ପେକ୍ଟର କହିଲେ ଏନ୍‌କ୍ୱାରୀ କରି ତାର କନେକ୍‌ସନ ଜାଣିବାକୁ ପଡ଼ିବ । ତାର ସାଥୀ ମାନଙ୍କୁ ଧରିବାକୁ ପଡ଼ିବ । ମୋ ପାଟିରୁ ବାହାରି ପଡ଼ିଲା ସେ ନିସଙ୍ଗ । ତାର ସାଥୀ କେହି ନାହାନ୍ତି ।

ଇନିସ୍ପେକ୍ଟର କହିଲେ ଠିକ୍ କଥା ସାର୍ । କାପାଳିକ ହୋଇଥିବ । ନରବଳି ଦେବାକୁ ପିଲାଚୋରୀ କରୁଥିବ । ମୁଁ ମନେ ମନେ ଭାବିଲି, ନରବଳି ବିନା କ'ଣ କୌଣସି ସାଧନାର ସିଦ୍ଧି କ'ଣ ମିଳିପାରେ ?

Digitized by srujanika@gmail.com

# ବିଷାକ୍ତ ପୃଥିବୀ

ଲୋକଟା ନିପଟ ବୋକା । ଏତେ ବୋକା ଯେ ଟାଉନ୍ ବସ୍‌ରେ ଟିକେଟ କରିଯାଏ । ସିନେମା ହଲ୍‌ରେ ଟିକେଟ କରିବା ପାଇଁ ହେଉ କି ରେଲ୍‌ୱେ ଷ୍ଟେସନରେ ହେଉ ନହେଲେ କଣ୍ଟ୍ରୋଲ ଦୋକାନରେ ହେଉ ଯେଉଁଠି ଗୋଟିଏ ଲାଇନ୍ ଦେଖେ ଚୁପ୍‌ଚାପ୍ ସବା ପଛରେ ଯାଇ ଠିଆ ହୋଇଯାଏ । ସେ ଏଇ କେତେଦିନ ହେଲା ଆମ ସାହିରେ ଘର ଭଡ଼ା ନେଇ ରହୁଛି । ତାର ମୋର ସବୁଦିନେ ଅଫିସ ଯିବାବେଳେ ଟାଉନ ବସରେ ଦେଖା ହୁଏ । କେବେ କେମିତି ପଦେ ଦିପଦ କଥା ହେଉଛୁ ମଧ୍ୟ । କିନ୍ତୁ ସେ କେବେ ଆମ ଘରକୁ ଆସିନାହିଁ କି ମୁଁ ମଧ୍ୟ କେବେ ତା ଘରକୁ ଯାଇନାହିଁ ।

ସେଦିନ ମଧ୍ୟ ଯାଇ ନଥାନ୍ତି ଯଦି ମାର୍କେଟରୁ ଫେରିବା ବେଳେ ହଠାତ୍ ଏତେ ଜୋରରେ ବର୍ଷା ହୋଇ ନଥାନ୍ତା । ଆମ ଘର ପର୍ଯ୍ୟନ୍ତ ଆସିବା ଭିତରେ ପୂରା ଓଦା ହୋଇଯାଇଥାନ୍ତି । ତେଣୁ ଅଗତ୍ୟା ତାଙ୍କ ଘର ଭିତରେ ପଶିଗଲି । ଯାଇ ଦୁଆର ଖଟ୍ ଖଟ୍ କଲି । ଲୋକଟି ଦୁଆର ଫିଟାଇଲା । ମତେ ଦେଖି ଟିକିଏ ହସିଲା । (ବୋଧେ ତା ଜୀବନରେ ପ୍ରଥମଥର ଟିକେ ହସିଲା ।) ମତେ ତାହାର ଘରେ ବସାଇ ଚା' କରିବା ପାଇଁ ଭିତରକୁ ଗଲା । ଘରେ ସେମିତି କିଛି ଆସବାବ ପତ୍ର ନଥାଏ । ରଙ୍ଗ ଛାଡ଼ିଯାଇଥିବା ସୋଫା, କେତେଟା ମାଟି କଣ୍ଢେଇ ଆଉ ବହିପତ୍ର । କିନ୍ତୁ କଣରେ ଗୋଟିଏ ଟେବୁଲ ଉପରେ ମୁଗୁନି ପଥରର ଗୋଟିଏ ସୁନ୍ଦର ଜଗନ୍ନାଥ ମୂର୍ତ୍ତିଟେ ଥାଏ । ମୂର୍ତ୍ତିଟା ଚମତ୍କାର ଦେଖା ଯାଉଥାଏ । ମୁଁ ହେଇ ମୂର୍ତ୍ତିଟାକୁ ଭଲ ଭାବରେ ଦେଖୁଥାଏ । ସେ ଚହା ନେଇ ପହଞ୍ଚିଲା । ମୁଁ ତାକୁ ମୂର୍ତ୍ତି ବିଷୟରେ ପଚାରିଲି । କହିଲି ମୂର୍ତ୍ତିଟା ଭଲ ହୋଇଛି । କେଉଁଠୁ କିଣିଥିଲେ ? ସେ କହିଲା ନା କିଣି ନଥିଲି । ଏଇଟା ମୋ ବଡ଼ବାପା ପୁଅ ଭାଇ ଗଢ଼ିଥିଲେ । ଆମେ ହେଲୁ ବଢ଼େଇ ଘର । ମୂର୍ତ୍ତି ଗଢ଼ିବା ହେଲା ଆମର କୌଳିକ ପେଷା ।

ଆମ ଗାଁ ପାଖରେ ଭଲ ମୁଗୁନି ପଥର ମିଳେ । ସେଇ ମୁଗୁନି ପଥରରେ ଆମେ ପୁରୁଷ ପୁରୁଷ ଧରି ମୂର୍ତ୍ତି ଗଢ଼ି ଆସୁଛୁ । ମୁଁ ତାଙ୍କ ବଂଶ ପରମ୍ପରା ବିଷୟରେ ବେଶି ଜାଣିବା ପାଇଁ ଆଦୌ ଆଗ୍ରହୀ ନଥିଲି । କଥା ମଝିରୁ ପଚାରିଲି ଏଇ ମୂର୍ତ୍ତି

Digitized by srujanika@gmail.com

ଯିଏ ଚଢ଼ିଥିଲେ ମୋ ବଡ଼ବାପା ପୁଅ ଭଇ ସେ ଏବେ କ'ଣ କରୁଛନ୍ତି ? ସେ ହଠାତ୍ ନୀରବ ହୋଇଗଲା, ତା' ଆଖିରୁ ଜ୍ୟୋତି ଲିଭି ଲିଭି ଆସିଲା । ମତେ ଭରି ଖରାପ ଲାଗିଲା । ମିଛରେ ବିଚରା ସରଳ ଲୋକଟାକୁ ଆଘାତ ଦେଲି । କଥାଟାକୁ ହାଲ୍କା କରିବା ପାଇଁ କହିଲି ସେ କଣ କୌଣସି ଆକ୍ସିଡେଣ୍ଟ କି ରୋଗର...... ।

ସେ ମୋ' ପାଟିରୁ କଥା ଛଡ଼େଇ ନେଇ କହିଲା ନା, ନା ସେମିତି ନୁହେଁ । ସେ ଏବେବି ବଞ୍ଚିଛନ୍ତି । ତାପରେ ଦୀର୍ଘ ଶ୍ୱାସଟେ ନେଇ କହିଲା କିନ୍ତୁ ବଂଚି ମଧ୍ୟ ନବଂଚିଲା ଭଳିଆ । ତାପରେ ଦି ତିନି ଢୋକ ଚା' ଢୋକି କହିଲା ସେ ଗୋଟିଏ ଛୋଟିଆ କାହାଣୀ । ଆମ ଅଂଚଳରେ ଆମ ଘରେ ଘଟି ଯାଇଥିବା କଥା । ଆମେ ଅଂଙ୍କ ନିଭେଇଛୁ । ତାପରେ ସେ ପୁଣି ଗୋଟିଏ ଦୀର୍ଘଶ୍ୱାସ ନେଲା । ଅନେକ ସମୟ ନୀରବ ରହିଲା । ତାପରେ ଦୁଇ ଢୋକ ଚହା ପିଇ ଆଖିବୁଜି କଣ ସବୁ ଭବିଲା । ତାପରେ ଧୀରେ ଧୀରେ କହିବାକୁ ଲାଗିଲା..... ।

ତିରିଶ ବର୍ଷ ତଳର କଥା । ମୋ ବାପା ବଡ଼ବାପା ଦିଜଣଙ୍କର ଶିଳ୍ପୀ ହିସାବରେ ଭଲ ନାଁ ଥାଏ । ପାଖ ଆଖ ସହରମାନଙ୍କରୁ ଆରମ୍ଭ କରି ବିଦେଶରୁ ଆସୁଥିବା ଟୁରିଷ୍ଟମାନେ ମଧ୍ୟ ଆମ ଘରକୁ ଆସୁଥିଲେ ମୂର୍ତ୍ତି କିଣିବା ପାଇଁ । ବାହାରୁ ବରାଦ ମଧ୍ୟ ବରାବର ଆସୁଥିଲା । ଆମ ଘରଟା ଗୋଟିଏ ଛୋଟକୋଟିଆ ଇଣ୍ଡଷ୍ଟ୍ରି ହୋଇ ଯାଇଥାଏ । ମୁଁ ଆଉ ମୋ ବଡ଼ବାପା ପୁଅ ମଣ୍ଟୁ ମଧ୍ୟ କାମ ଶିଖୁଥାଉ । ମଣ୍ଟୁ ମୋଠୁ ବର୍ଷେ ବଡ଼ । ଭରି ଏକଜିଦିଆ । ଯାହା ବୁଝିଥିବ ସେଇଆ । ହେଲେ ମୂର୍ତ୍ତି ଗଢ଼ିବା ଚିତ୍ର ଆଙ୍କିବା ଏସବୁରେ ଧୁରନ୍ଧର । ଏତେ କମ୍ ବୟସରେ ଏତେ ସୁନ୍ଦର ସୁନ୍ଦର ମୂର୍ତ୍ତି ଗଢ଼ି ପାରୁଥିଲା ଯେ ଆମ ଘର ଲୋକେ ମଧ୍ୟ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ବୟସ ବଢ଼ିବା ସାଙ୍ଗରେ ତାର ସୃଜନାତ୍ମକ ଦୃଷ୍ଟିକୋଣ ମଧ୍ୟ ଉନ୍ନତି କରି ଚାଲିଥାଏ । ଚଉଦ ପନ୍ଦର ବର୍ଷ ହେଲା ବେଳକୁ ସେ ମୂର୍ତ୍ତି ଗଢ଼ିବାରେ ମୋଠୁ କାହିଁରେ କଣ ଆଗେଇଯାଇଥାଏ । କିନ୍ତୁ ପାଠପଢ଼ାରେ ତାର ଆଦୌ ମନ ନଥାଏ । ଖାଲି ପାଠପଢ଼ାରେ କାହିଁକି, ଖେଳକୁଦ, ଯାନିଯାତ୍ରା କୋଉଥିରେ ତାର ଆଗ୍ରହ ନଥାଏ । ଯେତେବେଳେ ଦେଖ ନିହଣ ମୁଗୁର ଧରି ମୂର୍ତ୍ତି ଗଢୁଥିବ । ନହେଲେ ତୁଳୀଧରି ଚିତ୍ର ଆଙ୍କୁଥିବ । ତାର ଗାଁରେ ସଙ୍ଗ ବୋଲି କେହି ନଥିଲେ କହିଲେ ଚଳେ ।

ତାର ଦଶମ ଶ୍ରେଣୀ ବେଳେ ବଡ଼ବାପାଙ୍କ ମୃତ୍ୟୁ ହୁଏ । ତାଙ୍କର ଶ୍ୱାସ ରୋଗ ଥିଲା । ବଡ଼ବାପାଙ୍କ ମୃତ୍ୟୁରେ ଘରେ ସମସ୍ତେ ବ୍ୟଥିତ ହେଲେ । ଘରର ଧାରାବାହିକ ନୀତି ନିୟମରେ ବ୍ୟତିକ୍ରମ ହେଲା । ମଣ୍ଟୁ କିନ୍ତୁ ଦୁଃଖରେ ହେଉ କି କଟକଣା ଅଭାବରୁ ହେଉ ପାଠପଢ଼ା ପୁରାପୁରି ଛାଡ଼ ଦେଲା ।

Digitized by srujanika@gmail.com

ବଡମା ମୂଳରୁ ଧର୍ମପରାୟଣା ଥିଲେ । ବୈଷ୍ଣବ ଧର୍ମ ଦୀକ୍ଷା ନେଇଥିଲେ । ବଡବାପାଙ୍କ ମୃତ୍ୟୁପରେ ପୁରାପୁରି ବୈଷ୍ଣବୀ ହୋଇଗଲେ । ଯେତେବେଳେ ଦେଖ ରାଧାକୃଷ୍ଣ ମୂର୍ତ୍ତି ଆଗରେ ବସି ଭଜନ ବୋଲୁଥିବେ ନହେଲେ ପୂଜା କରୁଥିବେ । ମଣ୍ଟୁକୁ ଆକଟ କରିବାକୁ କେହି ରହିଲେନି । ମୋ ବାପା ଯେତେ ବୁଝେଇଲେ ବି ସେ ଶୁଣିଲାନି । ପାଠପଢ଼ା ଛାଡ ସବୁବେଳେ ମୂର୍ତ୍ତି ଗଢ଼ିବାରେ ଲାଗିଲା ।

ଏମିତି କେତେଦିନ ଗଡଗଲା । ଦିନେ ସକାଳୁ ସକାଳୁ ଗୋଟିଏ ଗାଡ଼ି ଆସି ଆମ ଘର ଦୁଆରେ ଲାଗିଲା । ସେଥିରେ ସରୋଜ ବାବୁ ଆସିଥିଲେ । ମୋ ବାପା ତାଙ୍କୁ ଚିହ୍ନିଥିଲେ । ସେ ଆଗରୁ କେତେଥର ମୂର୍ତ୍ତି କିଣିଛନ୍ତି । ପୁରୁଣା ଗରଖ, ସେ ଘରିଆଡେ ବୁଲି ମୂର୍ତ୍ତି ଗୁଡ଼ାକ ଦେଖିଲେ । ମଣ୍ଟୁର ତିଆରି ମୂର୍ତ୍ତି ଗୁଡକୁ ଭାରି ପ୍ରଶଂସା କଲେ । କେତୋଟି ମୂର୍ତ୍ତି କିଣିଲେ ମଧ୍ୟ । ଗଲାବେଳକୁ ବାପାଙ୍କୁ ଡାକି କହିଲେ ଅନୁମତି ଦେଲେ ସେ ମଣ୍ଟୁକୁ ସାଙ୍ଗରେ ନେଇ ଯାଆନ୍ତେ । ଏତେବଡ଼ ପ୍ରତିଭାବାନ୍ ଶିଳ୍ପୀକୁ ଏଠି ଟାଙ୍କେ ରଖି ନଷ୍ଟ କରିଦେବା ଉଚିତ ନୁହେଁ । ସେଠି ସେ ମଣ୍ଟୁକୁ ଲୋକଲୋଚନକୁ ଆଣିବେ । ସେ ବାପାଙ୍କୁ ଚିନ୍ତା କରିବାକୁ ସାତଦିନ ସମୟ ଦେଲେ । କହିଲେ ମୁଁ ପୁଣି ସାତଦିନ ପରେ ଆସିବି । ମଣ୍ଟୁର ଯଦି ଯିବାର କଥା ତାହେଲେ ସେ ରେଡ ହୋଇଥିବ ।

ସେ ଯିବାର ସାତଦିନ ପର୍ଯ୍ୟନ୍ତ ଆମଘରେ ଭରି ଯୁକ୍ତିତର୍କ ଚାଲିଲା । ବାପା ଆଦୌ ରାଜି ହେଉ ନଥାନ୍ତି ମଣ୍ଟୁକୁ ସରୋଜ ବାବୁଙ୍କ ସଂଗରେ ଛାଡଦେବବା ପାଇଁ । ଏଣେ ମଣ୍ଟୁର ଗୋଟେ ଜିଦ ସେ ଜେମିତି ହେଲେ ଯିବ । ବହୁତ ବାକ୍ ବିତଣ୍ଡା ପରେ ଠିକ୍ ହେଲା ଯେ ମଣ୍ଟୁ ଯିବ । କିନ୍ତୁ ମାସେ ପରେ ବାପା ସରୋଜ ବାବୁଙ୍କ ଘରକୁ ଯିବେ । ସେଠିକାର ହାବଭାବ ବାପାଙ୍କୁ ଭଲ ଲାଗିଲେ ମଣ୍ଟୁ ସେଠି ରହିବ । ନହେଲେ ବାପାଙ୍କ ସାଙ୍ଗରେ ଘରକୁ ଫେରିବ ।

ସାତଦିନ ପରେ ସରୋଜବାବୁ ଆସି ମଣ୍ଟୁକୁ ସାଙ୍ଗରେ ନେଇଗଲେ । ମଣ୍ଟୁ ଗଲାବେଳେ ବଡମାକୁ ଗୋଟିଏ ସୁନ୍ଦର ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଦେଲା । ମଣ୍ଟୁ ଗଲାପରେ ବଡ଼ମା ଦିନେ ଦୁଇଦିନ କାନ୍ଦଲେ । ତାପରେ ତାଙ୍କର ଭଜନ ଭଣାଣରେ ପୁଣି ଥରେ ମଜ୍ଜିଗଲେ ।

ଏଣେ ମଣ୍ଟୁ ସରୋଜ ବାବୁଙ୍କ ସାଙ୍ଗରେ ସହର ଗଲା । ସରୋଜ ବାବୁ ତାଙ୍କ ଘରେ ମଣ୍ଟୁ ପାଇଁ ରହିବାର ବନ୍ଦୋବସ୍ତ କରିଦେଲେ । ମଣ୍ଟୁକୁ ସେ ମିୟୁଜିୟମ୍, କୋଣାର୍କ, ଲିଙ୍ଗରାଜ ମନ୍ଦିର ଇତ୍ୟାଦି ବୁଲାଇ ଦେଖାଇଲେ । ବଡ ବଡ ଶିଳ୍ପୀମାନଙ୍କ ସାଙ୍ଗରେ ଚିହ୍ନା କରାଇ ଦେଲେ । ମଣ୍ଟୁ ସୁବିଧା ଦେଖି ସେମାନଙ୍କଠାରୁ ନୂଆ ନୂଆ ଜିନିଷ ଶିଖିଲା । ସେମାନଙ୍କଠାରୁ ବହିପତ୍ର ଆଣି ପଢ଼ିଲା । ସେମାନେ ମଧ୍ୟ ମଣ୍ଟୁର

Digitized by srujanika@gmail.com

ପ୍ରଚଣ୍ଡ ପ୍ରତିଭାକୁ ଉତ୍ସାହ ଦେଲେ । ମଣ୍ଟୁ ଗୋଟିଏ ନୂଆ ଦୁନିଆର ସନ୍ଧାନ ପାଇଲା ଯେଉଁଠି ସମସ୍ତେ ତା ଆଡକୁ ନଜର ଦେଉଛନ୍ତି । ତାର ପ୍ରତିଭାକୁ ସ୍ୱୀକାର କରୁଛନ୍ତି ।

ସରୋଜ ବାବୁ ଚଗଲା ବାବାଙ୍କ ଭକ୍ତ । ଏ ସହରର ବହୁତ ବିଶିଷ୍ଟ ଲୋକ ସେଇ ଚଗଲା ବାବାଙ୍କ ଭକ୍ତ । ସରୋଜ ବାବୁ ଚଗଲା ବାବାଙ୍କ ସେବାରେ ଅନେକ ପଇସା ଖର୍ଚ୍ଚ କରନ୍ତି, ତେଣୁ ଅନ୍ୟ ଚେଲାମାନଙ୍କ ଆଗରେ ତାଙ୍କର ଖାତିର୍ ଥାଏ । ସରୋଜବାବୁ ମଣ୍ଟୁକୁ ସମସ୍ତଙ୍କ ସାଙ୍ଗରେ ଚିହ୍ନା କରେଇ ଦିଅନ୍ତି । କୁହନ୍ତି ଏ ଜଣେ ବିଶ୍ୱ ବିଖ୍ୟାତ ଶିଳ୍ପୀ ହେବାକୁ ଯାଉଛି । ସମସ୍ତେ ମଣ୍ଟୁକୁ ଉତ୍ସାହ ଦିଅନ୍ତି ଆଦର କରନ୍ତି । ମଣ୍ଟୁ ଭାବେ ଦୁନିଆଟା କେତେ ଭଲ ସତେ । କଳାକାର ମାନଙ୍କର କି ଆଦର ଏଠି । ସେ ଦ୍ୱିଗୁଣିତ ଉତ୍ସାହରେ ଲାଗିଯାଏ ତା କାମରେ ।

ସେ ଖବର ନେଇ ଏତିକି ଜାଣିଛି ଯେ ସରୋଜ ବାବୁ କଣ୍ଟ୍ରାକଟ୍ରି କରନ୍ତି । କେଉଁଠି କରନ୍ତି କେବେ ଯାଆନ୍ତି ସେ ଜାଣିନି । ଜାଣିବାକୁ ଚାହେଁନି ମଧ୍ୟ ।

ଏମିତି ଦିନେ ଶୋଇଥିଲା ବେଳେ ସେ ସ୍ୱପ୍ନ ଦେଖିଲା ଜଗନ୍ନାଥ ତା ଖଟ ପାଖରେ ତ୍ରିଭଙ୍ଗି ଭଙ୍ଗିରେ ଠିଆ ହୋଇ ବଂଶୀ ବଜାଉଛନ୍ତି । ତା ନିଦ ଭାଙ୍ଗିଗଲା ସେ ଭାବିଲା ଜଗନ୍ନାଥଙ୍କର ତ ହାତଗୋଡ ନାହିଁ ସେ ଏମିତି ଠିଆ ହୋଇ ବଂଶୀ ବଜେଇଲେ କେମିତି । ସେ ସ୍ୱପ୍ନରେ ଦେଖିଥିବା ମୂର୍ତ୍ତିଟାକୁ ମନେ ପକାଇଲା । ମନେ ପକେଇ ସାଙ୍ଗେ ସାଙ୍ଗେ ତାକୁ ଆଙ୍କି ରଖିଲା । ତାପରେ ଲାଗିପଡ ସେଇ ଚିତ୍ରକୁ ପଥରରେ ଗଢ଼ିଲା । ସେ ମୂର୍ତ୍ତିଟା ଅତି ଚମତ୍କାର ହେଲା । ସମସ୍ତେ ସେଇଟାକୁ ପସନ୍ଦ କଲେ । ସେଇ ସମୟରେ ସେଇ ସହରରେ ଗୋଟିଏ ବଡ ଏକ୍ଜିବିସନ୍ ପଡଥାଏ । ସରୋଜ ବାବୁ ଚେଷ୍ଟା କରି ସେଇ ମୂର୍ତ୍ତିଟାକୁ ଗୋଟିଏ ଆଖିଦୃଶିଆ ଜାଗାରେ ରଖିଦେଲେ । ସେ ମୂର୍ତ୍ତିଟା ଭାରି ଲୋକପ୍ରିୟ ହେଲା । କେଲେଣ୍ଡର ବାଲା, ମାଗାଜିନ୍ ବାଲା ସମସ୍ତେ ତାର ଫଟୋ ନେଇ ଛାପିଲେ । ରାତାରାତି ମଣ୍ଟୁ ବିଖ୍ୟାତ ହୋଇଗଲା ।

ସରୋଜବାବୁ ଯୋଗାଡ କରି ଦିଲ୍ଲୀରେ ଗୋଟିଏ ବିଖ୍ୟାତ ଆର୍ଟ ଗ୍ୟାଲେରୀରେ ମଣ୍ଟୁର ଏକ ଏକକ ପ୍ରଦର୍ଶନୀ ଆୟୋଜନ କଲେ । ଅନେକ ଟଙ୍କା ଖର୍ଚ୍ଚ କରି ବଡ ବଡ ଖବର କାଗଜରେ ବିଜ୍ଞାପନ ଦେଇ ପ୍ରଦର୍ଶନୀଟିକୁ ଅନେକ ଲୋକପ୍ରିୟ କରାଇଲେ ପ୍ରଦର୍ଶନୀଟି ଦର୍ଶକଙ୍କୁ ଆକୃଷ୍ଟ କଲା । ସେମାନଙ୍କ ମଧ୍ୟରୁ ଜର୍ମାନର ଜଣେ ବିଶିଷ୍ଟ ବ୍ୟକ୍ତି ମଧ୍ୟ ଥିଲେ । ସେ ମଣ୍ଟୁକୁ ଜର୍ମାନ ନିମନ୍ତ୍ରଣ କଲେ । ଏମିତିକି ସେ ମଣ୍ଟୁ ଏବଂ ସରୋଜବାବୁଙ୍କ ଯିବା ଆସିବା ରହିବା ଇତ୍ୟାଦିର ଖର୍ଚ୍ଚ ବହନ କରିବାକୁ ମଧ୍ୟ ରାଜି ହେଲେ—

Digitized by srujanika@gmail.com

ଦିନ ଠିକ୍ ହେଲା । ଭିସା ପାସ୍ପୋର୍ଟ ସବୁ ଠିକ୍ ହେଲା । ମହେନ୍ଦ୍ରବାବୁ ମଣ୍ଟୁର ବଛା ବଛା ମୂର୍ତ୍ତି ଗୁଡ଼ିକ ଭଲଭାବରେ ପ୍ୟାକିଙ୍ଗ କରିବାର ବନ୍ଦୋବସ୍ତ ମଧ୍ୟ କରାଇ ଦେଲେ । ମଣ୍ଟୁ କିଛି ଜାଣି ପାରୁନଥାଏ । ସବୁକାମ ମହେନ୍ଦ୍ର ବାବୁ ବୁଝୁଥାନ୍ତି ।

ଦିଲ୍ଲୀ ଏରୋଡ୍ରମରେ ଏମାନେ ଏରୋପ୍ଲେନକୁ ଜଗିଥାନ୍ତି । ଏହି ସମୟରେ କଷ୍ଟମସ୍ ଭିତରେ କେତେକ ବିଶେଷ ଅଫିସର ମଣ୍ଟୁର ମୂର୍ତ୍ତିମାନଙ୍କ ପେଟି ଖୋଲିବାକୁ ଲାଗିଲେ । ମୂର୍ତ୍ତିମାନଙ୍କ ପେଟି ଖୋଲୁ ଖୋଲୁ ସେଥିରୁ କେତୋଟି ଅତି ପ୍ରାଚୀନ ମୂର୍ତ୍ତି ବାହାରିଲା ଯେଉଁ ଗୁଡ଼ିକ ଭାରତରେ ବିଭିନ୍ନ ପ୍ରାଚୀନ ମନ୍ଦିରରୁ ଚୋରୀ ହୋଇଥିଲା । ମଣ୍ଟୁକୁ ସାଙ୍ଗେ ସାଙ୍ଗେ ଗିରଫ କରାଗଲା । ପରେ ପରେ ତାକୁ କୋର୍ଟକୁ ଚାଲାଣ କରାଗଲା । ସେ କିଛି ଜାଣିନି ବୋଲି ଯେତେ କହିଲେ ମଧ୍ୟ ତାର କଥା କେହି ଶୁଣିଲେନି । ତାକୁ ପାଞ୍ଚବର୍ଷ ସଶ୍ରମ କାରାଦଣ୍ଡ ଆଦେଶ ହେଲା ।

ଏକଥା ଖବର କାଗଜରେ ବାହାରି ପଡ଼ିଲା । ସମସ୍ତେ ଜାଣିଲେ । ଗାଁରେ ମଧ୍ୟ ଲୋକେ ଦେଖାଇ ଶୁଣାଇ କେତେ କଥା କହିଲେ । ଆମେ ସବୁ ଚୁପ୍‌ଚାପ୍ ସବୁ ଶୁଣୁଥାଉ । ଦିନେ ସକାଳେ ଉଠି ଦେଖିଲୁ ବଡ଼ମା ଘରେ ନାହାନ୍ତି । କେତୋଟି ଲୁଗା ଆଉ ମଣ୍ଟୁ ଦେଇଥିବା ମୂର୍ତ୍ତିଟା ନେଇ କୁଆଡେ ଚାଲିଯାଇଛନ୍ତି । ଚାରିଆଡେ ଖୋଜା ହେଲା । ଅନେକଦିନ ପରେ ଖବର ଆସିଲା ଯେ ସେ ପୁରୀ ପାଖ ଗୋଟେ ଗାଁରେ ରହୁଛନ୍ତି । ପ୍ରଥମେ ସେ ଯାଇ ସେ ମନ୍ଦିରରେ ରହୁଥିଲେ । କିନ୍ତୁ ତାଙ୍କ ଅମାୟିକ ବ୍ୟବହାର ଆଉ ଭକ୍ତି ଦେଖି ଗାଁ ବାଲା ମନ୍ଦିର ପାଖରେ ଗୋଟିଏ ଚାଳିଆ ତିଆରି ଦେଇଛନ୍ତି । ସେ ସେଠି ଥାଆନ୍ତି । ଭଜନ ବୋଲନ୍ତି, ପୂଜା କରନ୍ତି । ମନ୍ଦିରର ଭୋଗ ଖାଆନ୍ତି ।

ଆମେ ସବୁ ତାଙ୍କୁ ଆଣିବାକୁ ଗଲୁ । ସେ ଆଦୌ ରାଜି ହେଲେ ନାହିଁ । ଆମେ ଫେରି ଆସିଲୁ । ବାପା ପ୍ରଥମେ ପ୍ରଥମେ ପ୍ରତି ମାସରେ ଟଙ୍କା ପଠାଇଲେ ଟଙ୍କା ଫେରି ଆସିଲା । ଏମିତି କେତେ ଦିନ ପରେ ଦିନେ ଟେଲିଗ୍ରାମ ଆସିଲା । ଯେ ସାପ କାମୁଡ଼ ଦେବାରୁ ବଡ଼ମାଙ୍କ ମୃତ୍ୟୁ ହୋଇଛି । ବାପା ସାଙ୍ଗେ ସେଠାକୁ ଗଲେ । କିନ୍ତୁ ଗାଁ ବାଲା ତାଙ୍କର ସତ୍କାର ଆଗରୁ କରିଦେଇଥିଲେ ।

ପାଞ୍ଚ ବର୍ଷ ପରେ ମଣ୍ଟୁ ଜେଲ୍‌ରୁ ଫେରି ସିଧା ଗାଁକୁ ଆସିଲା । ତାର ମୁଣ୍ଡର ଅବସ୍ଥା ଠିକ୍ ନଥାଏ । ସେ ବଡ଼ମାଙ୍କ ଖବର ଶୁଣିଲା । ଗାଁ ବାଲାଙ୍କ ଚୁଗୁଲି ମଧ୍ୟ ତା କାନରେ ପଡ଼ିଲା । କେତେଦିନ ପରେ ସେ ବାପାଙ୍କଠୁ ଠିକଣା ନେଇ ବଡ଼ମା

Digitized by srujanika@gmail.com

ରହୁଥିବା ଗାଁକୁ ଗଲା । ସେ ନ ଫେରିବାରୁ ଆମେ ସବୁ ତାଙ୍କୁ ଆଣିବାକୁ ଗଲୁ । ସେଠି ଯାଇ ଦେଖିଲୁ ସେ ବଡମା ରହୁଥିବା ଘରେ ରହୁଛି । ଦାଢ଼ି କାଟୁନି କି ମୁଣ୍ଡ କୁଣ୍ଡାଉନି । ଦିନଯାକ ବୁଲି ବୁଲି ପଥର ଗୋଟାଉଛି, ରାତିରେ ମୂର୍ତ୍ତି ଗଢୁଛି । ସବୁତକ ଜଗନ୍ନାଥଙ୍କ ମୂର୍ତ୍ତି । କେଉଁଥିରେ ଜଗନ୍ନାଥଙ୍କର ହାତ ନାହିଁ ତ କେଉଁଥିରେ ଜଗନ୍ନାଥଙ୍କର ନାକ ନାହିଁ । କେଉଁଥିରେ ଜଗନ୍ନାଥ ଆଖି ବୁଜିଯାଇଛି ତ କେଉଁଥିରେ ଜଗନ୍ନାଥଙ୍କ ଓଠର ହସଟା ଲିଭି ଯାଇଛି ।

ଆମେ ଯେତେ ବୁଝାଇଲୁ ବୁଝିଲାନି କି ଯେତେ ଡାକିଲୁ ଶୁଣିଲାନି । ବର୍ତ୍ତମାନ ବି ସେ ସେଠି ରହିଛି । ମୂର୍ତ୍ତି ଗଢୁଛି ।

ଏତିକିରେ ଲୋକ ଜଣକ ନୀରବ ରହିଲା । ମୁଁ ପଚାରିଲି "ସରୋଜ ବାବୁଙ୍କର କଣ ହେଲା, ସେ ଏବେ କେଉଁଠି ।"

ସେ ଟିକିଏ ହସିଲା କହିଲା "ସେ ପରା ସରୋଜ କୁମାର ପଟ୍ଟନାୟକ, କଳା ଓ ସଂସ୍କୃତି ବିଭାଗର ମନ୍ତ୍ରୀ" ।



Digitized by srujanika@gmail.com

# ପରାଜିତ ମହାରଥୀ

ଜୋତା ଦୋକାନରେ ପହଞ୍ଚିଲା ମାତ୍ରେ ସେ ନିଜର ଦୟନୀୟତାକୁ ପୁଣି ଥରେ ଅନୁଭବ କଲା । ସେ ଜଣ ଜାଣିଥିଲା ଯେ ପନ୍ଦର ଦିନ ତଳେ ଖବର କାଗଜରେ ଜୋତାର ବିଜ୍ଞାପନରେ ଯେଉଁ ଦରମାନ ଲେଖା ହୋଇଥିଲା ତାର ଦାମ୍ ଏବେ ଏତେ ବଢ଼ି ଯାଇଥିବ । ଗତ ତିନିମାସ ହେଲା ତା ଦରମାରୁ ଅଳ୍ପ ଟିକି ଟିକି କରି ସେ ଅଲଗା ରଖିଦେଇ ଥିଲା ଏକ ଜୋତା କିଣିବା ପାଇଁ । ଆଜି ଏ ମାସର ଦରମା ପାଇଲା ପରେ ସେ ଆସିଛି ଜୋତା ଦୋକାନକୁ । ସେ ଭାବିଥିଲା ତା ପାଖରେ ଥିବା ଟଙ୍କାରେ ସେ ବିଜ୍ଞାପନରୁ କାଟି ରଖିଥିବା ଜୋତା ଏବଂ ଗୋଟିଏ ମୋଜା ବି କିଣି ପାରିବ । କିନ୍ତୁ ଜୋତା କିଣି ସାରିବା ପରେ ଦେଖିଲା ମୋଜା କିଣିବା ପାଇଁ ତା ପାଖରେ ଆଉ ପଇସା ନାହିଁ । ସେ ବାଧ୍ୟ ହୋଇ ଘର ଖର୍ଚ୍ଚ ଟଙ୍କାରୁ ଗୋଟିଏ ଶସ୍ତା ମୋଜା କିଣିଲା । ଦୋକାନୀକୁ ପଇସା ଦେଲାବେଳେ ସେ ଚିନ୍ତିତ ହୋଇପଡ଼ିଲା, ଯେଉଁ ଚିନ୍ତା ଅନେକ ଦିନ ଧରି ତା ମନରେ ସ୍ଥାନ ପାଇ ଆସିଥିଲା । ତାହା ଏବେ ପୁଣି ତାକୁ ବିବ୍ରତ କରିଦେଲା । ଏତିକି ଟଙ୍କାରେ ହୁଏତ ତା ସ୍ତ୍ରୀ ପାଇଁ ଗୋଟିଏ ଟାଙ୍ଗାଇଲ୍ ଶାଢ଼ୀ, ପିଣ୍ଟୁ ପାଇଁ ଗୋଟିଏ ସାର୍ଟ ଏବଂ ଝିନୀ ପାଇଁ ଗୋଟିଏ ଫ୍ରକ୍ କିଣି ପାରିଥାନ୍ତା । ସେମାନଙ୍କ ତାକୁ ହୁଏତ ବେଶି ଆତ୍ମ ସନ୍ତୋଷ ଦେଇଥାନ୍ତା । କିନ୍ତୁ ସେ ଯେତିକି ଦେଖିଲା ଜୋତା ହେଲେ ତାର ନିହାତି ଦରକାର । ଦୀର୍ଘ ବାରବର୍ଷ ଧରି ଗୋଟିଏ ସେମିସରକାରୀ ଅନୁଷ୍ଠାନରେ କିରାଣୀ ଭାବରେ ସେ କାର୍ଯ୍ୟ କରିଆସୁଛି । ଭୟଙ୍କର ଟାଇଫଏଡ଼ରେ ପୀଡ଼ିତ ଝିନୀକୁ ଛାଡ଼ି ଦେଇ, ଭଉଣୀର ପୁଅ ଭ୍ରତଘର ଦିନ ସରଜ ମଜଲିସ୍ ସବୁକୁ ପଛରେ ପକାଇ ସେ ଅଫିସରେ ହାଜିର ହୋଇଛି । କିନ୍ତୁ କଣ କରିପାରିଛି ସେ ନିଜ ପାଇଁ ? ଗୋଟିଏ ଭଲ ଜୋତା ବି ସେ ନିଜପାଇଁ କିଣି ପାରିବ ନାହିଁ ? ଜୋତାଟା ତା ପକ୍ଷରେ ଏକମାତ୍ର ଆବଶ୍ୟକୀୟ ପଦାର୍ଥ ନୁହେଁ । ସାଇକେଲର ଛିଣ୍ଡା ସିଟ୍ଟାକୁ ବଦଳାଇବା ଠାରୁ ଆରମ୍ଭ କରି ଗୋଟିଏ ଜନତା ଷ୍ଟୋଭ କିଣିବା ପର୍ଯ୍ୟନ୍ତ ତାର ଅନେକଗୁଡ଼ିଏ ଅଭିଳାଷ ଅର୍ଥାଭାବରୁ ସ୍ଥଗିତ ରହିଯାଇଛି । ସେଗୁଡ଼ିକ ତୁଳନାରେ ଗୋଟିଏ ଆଧୁନିକ ଷ୍ଟାଇଲ୍ର ଜୋତାର ଆବଶ୍ୟକତାଟା ନଗଣ୍ୟ ।

ଗୋଟିଏ ଭଲ ଦାମୀ ଜୋତା କିଣିବାର ଇଚ୍ଛାଟା ତା ମନରେ ସେଇଦିନ ଠାରୁ ସ୍ଥାନ ପାଇଥିଲା ଯେଉଁଦିନ ସେ ଭରତର ହୋଇ ଫାଇଲ ନେଇ ଅଫିସରଙ୍କ

Digitized by srujanika@gmail.com

ରୁମ୍‌କୁ ଯିବା ସମୟରେ ତାର ସ୍ଲିପରର ଶ୍ରାବ୍ୟତା ଛିଣ୍ଡି ଯାଇଥିଲା । ତାର ସହକର୍ମୀମାନଙ୍କ ସମ୍ମିଳିତ ହସ ଆଉ ତାଚ୍ଛଲ୍ୟ ମିଶା ଆକ୍ଷେପ ଶୁଣିଲା ପରେ ତା ମନରେ ଗଭୀର କ୍ଷୋଭ ଜାତ ହୋଇଥିଲା । ପରେ ପରେ ସେଇଟା ଅଭିମାନରେ ପରିଣତ ହେଲା । ସେହି ଅଭିମାନରେ ସେ ନିଷ୍ପତ୍ତି କଲା ଯେ ସେ ଗୋଟିଏ ଭଲ ଦାମିକା ଜୋତା କିଣିବ ।

ପରଦିନ ନୂଆ ଜୋତା ମୋଡ଼ା ପିନ୍ଧି ଅଫିସରେ ପହଞ୍ଚିବା ମାତ୍ରେ ସମସ୍ତେ ତାକୁ ଘେରି ଯାଇଥିଲେ । ସମସ୍ତେ ଜୋତାର ଡିଜାଇନ୍‌କୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାର ପସନ୍ଦକୁ ତାରିଫ କରିବା ସମୟରେ ସେ ଲାଜୁଆ ହୋଇଯାଇଥିଲା । କାରଣ ଏଭଳି ଗୋଟିଏ ଗୋଟିଏ ମୁହୂର୍ତ୍ତ ତା ଜୀବନରେ କ୍ୱଚିତ୍ ଆସୁଥିଲା । ଅଫିସରୁ ଫେରି ଘର ପାଖରେ ସାଇକେଲରୁ ଓହ୍ଲାଇବା ବେଳେ ସେ ଦେଖିଲା ତା ଘର ସାମ୍ନାରେ ଥିବା ରାସ୍ତା ଆରପଟେ ଯେଉଁ କଣ୍ଟ୍ରାକ୍ଟର ବାବୁ ରହନ୍ତି ସେ ବି ଠିକ୍ ତା ଜୋତା ପରି ଗୋଟିଏ ଜୋତା ପିନ୍ଧିଛନ୍ତି । ସେ ଅମରି ଝଣି ଡେଇଁ ସାଇକେଲ ଗଡ଼ାଇ ତା କୁଡ଼ିଆ ଭିତରକୁ ଚାଲିଦେଲା ଭାରି ଖୁସି ହୋଇଯାଇଥିଲା । ସେ ଭାବୁଥିଲା ଜୋତା ଖଣ୍ଡିକ ଦ୍ୱାରା ସେ କଣ୍ଟ୍ରାକ୍ଟରଙ୍କର କିଛି ନିକଟକୁ ଚାଲିଯାଇ ପାରିଛି । ଅଳ୍ପକ୍ଷଣ ପାଇଁ ସେମାନଙ୍କ ଘର ମଧ୍ୟରେ ଥିବା ବିରାଟ ରାଜପଥର ବ୍ୟବଧାନକୁ ସେ ଭୁଲି ଯାଇଥିଲା ।

କିଛି ଦିନ ପରେ ସେ ଦେଖିଲା ଜୋତାଟି ମଇଳା ହୋଇଯାଉଛି । ଜୋତାର ଆଉ ତା ସହିତ ନିଜର ମର୍ଯ୍ୟାଦା ରକ୍ଷା କରିବା ପାଇଁ ସେ ନିୟମିତ ଜୋତାକୁ ପଲିସ୍ କରିଦେଲା । ଏଥିରେ ପ୍ରତିଦିନ ତିରିଶ ପଇସା ଲେଖାଏଁ ଖର୍ଚ୍ଚ କରିବାକୁ ପଡ଼ିଲା । ତେଣୁ ସେ ଅଫିସରେ ଚା ପିଇ ପାରିଲା ନାହିଁ । ଅଭ୍ୟାସଟା ହଠାତ୍ ଛାଡ଼ ଦେବାରୁ ପ୍ରଥମେ ପ୍ରଥମେ ତାକୁ ଭାରି ଖରାପ ଲାଗିଲା, କିନ୍ତୁ ପରେ ପରେ ଦେହସୁହା ହୋଇଗଲା । କିନ୍ତୁ ବର୍ଷାଦିନ ଆସିଯିବାରୁ ତାର ଦୁର୍ଦ୍ଦିନ ଆରମ୍ଭ ହୋଇଗଲା । ତାର କଷ୍ଟାର୍ଜିତ ଆଉ ସୁରକ୍ଷିତ ଜୋତାଟାକୁ ମାଟି କାଦୁଅ ହେବାକୁ ସେ ଜମା ଚାହୁଁ ନଥିଲା । ବର୍ଷା ହେଉଥିବା ସମୟରେ ସେ ବାଟରେ ରହିଯାଉଥିଲା ନତୁବା ବୁଲି ବୁଲି ଶୁଖିଲା ରାସ୍ତା ଦେଖି ଯାଉଥିଲା । ତେଣୁ ଅଫିସରେ ପହଞ୍ଚିବା ଡେରି ହୋଇଯାଉଥିଲା । ବଡ଼ବାବୁ ତା ଆଡ଼କୁ ଭୂତ ଦେଖିଲା ପରି ଆଶ୍ଚର୍ଯ୍ୟ ହୋଇ ଚାହୁଁଥିଲେ ଆଉ ହାତ ଘଣ୍ଟାକୁ ଦେଖୁଥିଲେ ।

ସେ ଅଫିସରୁ ଫେରି ପ୍ରଥମେ ଖବର କାଗଜରେ ନିଜ ଜୋତାର ବିଜ୍ଞାପନ ଦେଖି ସେ ଆନନ୍ଦିତ ହେଉଥିଲା । ଆଉ ଜୋତାଦ୍ୱାରା ଉପୁଜିଥିବା ସମସ୍ତ

Digitized by srujanika@gmail.com

ଅସୁବିଧାକୁ ଘୁଣ୍ଟ୍ ଘୁଣ୍ଟିକ ମଧ୍ୟରେ ଲୁଚି ଯାଉଥିଲା । ଆଗରୁ ସେ ଅଫିସରୁ ଫେରିବା ବେଳେ କେବେ କେବେ ଚଣ୍ଡି ମନ୍ଦିର ଦେଇ ଆସୁଥିଲା । କିନ୍ତୁ ଜୋତା କିଣିବା ପରେ ସେ ମନ୍ଦିର ଯିବା ଛାଡ଼ିଦେଲା । କାରଣ ଜୋତାକୁ ମନ୍ଦିର ବାହାରେ ରଖି ଦେଇ ଯିବାକୁ ଭୟ କରୁଥିଲା । ଚୋରି ହୋଇଯିବାର ଭୟ । ଫୁଟି ଜୋତା ଷ୍ଟାଣ୍ଡରେ ରଖିବା ପାଇଁ ସବୁବେଳେ ପଇସା ନଥାଏ । ଆଜି କିନ୍ତୁ ସେ ଅଫିସ ଯିବା ଆଗରୁ ଚଣ୍ଡି ମନ୍ଦିରରେ ଦୀପଟିଏ ଜଳାଇ ଦେବାକୁ ସ୍ଥିର କଲା । ଆଜି ଟିନୁର ଜନ୍ମ ଦିନ । ସେ ପିଲା ହୋଇଥିବା ବେଳେ ତା ବାପା ତା ଜନ୍ମଦିନ ମାନଙ୍କରେ ସତ୍ୟନାରାୟଣ ପୂଜା କରଉଥିଲେ । ସେତିକି ତ ସେ କରିପାରୁ ନାହିଁ । କିନ୍ତୁ ଜନ୍ମ ଦିନମାନଙ୍କରେ ଦୀପ ଜଳାଇବାକୁ ସେ କେବେ ଭୁଲେ ନାହିଁ । ଚଣ୍ଡୀ ମନ୍ଦିରରେ ଦୀପ ଜଳାଇ ଘେର ଟିକିଏ କରଇ ଘର ଦେଇ ଅଫିସ୍ ଗଲାବେଳକୁ ଡେରି ହୋଇଗଲା । ବଡ଼ବାବୁ ଅଁଟିଏ ରାଗିଯାଇଥିଲେ । ତାକୁ ହାଜିର ଖାତାରେ ଦସ୍ତଖତ କରାଇବାକୁ ମନା କରି ଦେଲେ ଏବଂ ପୁଣି ଥରେ ଡେରିରେ ଆସିଲେ କୈଫିୟତ୍ ମାଗିବେ ବୋଲି ଧମକ ଦେଲେ । ବାରବର୍ଷ ଚାକିରୀ ଜୀବନରେ ତାର ଏପରି ଅନୁଭୂତି ଏଇ ପ୍ରଥମ । ଅଫିସରଙ୍କ ଘରେଇ କାମରେ ଯାଇ ଅଫିସ୍ ନଆସିଲେ ମଧ୍ୟ ତାର ହାଜିର ପଡ଼ୁଛି । ସେ ଆଜି ପର୍ଯ୍ୟନ୍ତ ଉପର ହାକିମମାନଙ୍କୁ ମୁହଁ ଖୋଲି କେବେ ଜବାବ ଦେଇନି । ଚୁପ୍ ଚାପ୍ ଅଫିସ୍‌ରୁ ବାହାରି ଆସି ସେ ବସା ଆଡ଼କୁ ଚାଲିଲା ।

ଅଧା ବାଟରେ ଦେଖିଲା ତା ବସା ପାଖର ପାନ ଦୋକାନୀ ଜଣକ ତା ଆଡ଼କୁ ତରବର ହୋଇ ଆସୁଛି । ସେ ସାଇକେଲରୁ ଓହ୍ଲାଇ ଚେଡ଼ ଘଟଣାଟା ପଚାରିଲା । ଜନ୍ମ ଦିନ ହୋଇଥିବାରୁ ଟିନୁ ସ୍କୁଲ ନଯାଇ ଘରେ ଖେଳୁଥିଲା । ରାସ୍ତା ଉପରକୁ ବଲ୍‌ଟା ଗଡ଼ି ଯିବାରୁ ସେ ବଲ୍ ଆଣିବା ପାଇଁ ଗଲାବେଳେ ଗୋଟିଏ ସାଇକେଲ ସାଙ୍ଗରେ ଧକ୍କା ଲାଗିଲା । ଟିନୁ ବେହୋସ ହୋଇ ଯାଇଥିଲା । ଆଉ ସାଇ ଲୋକେ ମିଶି ତାକୁ ଡାକ୍ତର ଖାନା ନେଇ ଯାଇଥିଲେ । ସେ ସାଙ୍ଗେ ସାଙ୍ଗେ ଡାକ୍ତରଖାନା ଚାଲିଲା । ଟିନୁର ଚେତା ଫେରି ଆସିଥିଲା । ଡାକ୍ତରଙ୍କଠାରୁ ବୁଝିଲା ଅତିରିକ୍ତ ରକ୍ତସ୍ରାବ ହେତୁ ଟିନୁ ଦୁର୍ବଳ ହୋଇଯାଇଛି । ତେଣୁ ରକ୍ତ ଦେବା ନିହାତି ଦରକାର । କାହା ରକ୍ତ ଟିନୁର ରକ୍ତ ସାଙ୍ଗରେ ମିଶିଲା ନାହିଁ । ତେଣୁ ରକ୍ତ ଭଣ୍ଡାରରୁ ହିଁ କିଣିବାକୁ ହେବ । କିନ୍ତୁ ତା ପାଖରେ ପଇସା ନଥିଲା । ତାର ବନ୍ଧୁମାନେ ମଧ୍ୟ ହଠାତ୍ ଏତେ ଟଙ୍କା ଦେଇ ପାରିଲେ ନାହିଁ । ସେ ଦୁଃଖିତ ହେଲା କିନ୍ତୁ କାହାକୁ ଦୋଷ ଦେଲା ନାହିଁ । କାରଣ ସେ ଜାଣିଥିଲା ସେମାନଙ୍କ ପାଖରେ ପଇସା ଥିଲେ ସେମାନେ ମନା କରି ନଥାନ୍ତେ । ମାସ ଶେଷରେ ସେମାନଙ୍କ ଅବସ୍ଥା ଠିକ୍ ତ' ଏପରି ହେବା ସ୍ୱାଭାବିକ୍ ।

Digitized by srujanika@gmail.com

ସମସ୍ତେ ତାଙ୍କୁ ଅଫିସର ବଡବାବୁଙ୍କୁ କହି ଅଫିସ୍ କ୍ୟାସରୁ ଟଙ୍କା ଆଣିବା ପାଇଁ ପ୍ରବର୍ତ୍ତାଇଲେ । ସେ କିନ୍ତୁ ସକାଳର ଘଟଣା ପରେ ବଡବାବୁଙ୍କ ପାଖରେ ଦାନ୍ତ ନିକୁଟି, ଅଣ୍ଟା ବଙ୍କାଇ, କାନ କୁଣ୍ଡାଇ କାକୁତି ମିନତି ହେବାକୁ ଋହୁଁ ନଥିଲା । ନିଜ ମନରେ ସଞ୍ଚୟ ମନୋବୃତ୍ତି ବଢାଇ ନଥିବାରୁ ପୁଣି ଥରେ ସେ ନିଜକୁ ଧିକ୍କାର କଲା । ପିଅର୍‌ଲେସ୍‌ର ଏଜେଣ୍ଟ ଆସି ତାକୁ ସଞ୍ଚୟ କରିବାପାଇଁ ବୁଝାଇଲା କେତେକ କଥାଗୁଡକ ତାର ମନେ ପଡଗଲା । ବିନ୍ଦୁ ବିନ୍ଦୁ ଜଳମିଶି କିପରି ମହାସମୁଦ୍ର ସୃଷ୍ଟି ହୁଏ—ପିଅର୍‌ଲେସ୍‌ର ଏଜେଣ୍ଟ ଗଲାପରେ ସେ କଥାଟିକୁ ଭଲରୂପେ ବିଶ୍ଳେଷଣ କରିଥିଲା । ସେ ଭାବି ଦେଖିଲା ବିନ୍ଦୁ ବିନ୍ଦୁ ଜଳରେ ମହାସାଗର ସୃଷ୍ଟି ହେବାର ସେ ଦେଖିନି, କେହିବି ଦେଖି ନଥିବେ । ତେଣୁ ବିନ୍ଦୁ ବିନ୍ଦୁ ଜଳ ଜମା ହୋଇ ମହାସାଗର ସୃଷ୍ଟି ହୋଇଥିବାର ଉକ୍ତିଟା କପୋଳକଳ୍ପିତ । କିନ୍ତୁ ଗାଁରେ ଥିଲା ସମୟରେ ସେ ଲକ୍ଷ୍ୟ କରିଛି ଖରଦିନେ ବିନ୍ଦୁ ବିନ୍ଦୁ ଜଳ ଶୁଖି ନଈନାଳ ସବୁ ପୁରା ଶୁଖିଯାଏ । ମାଟି ବିନ୍ଦୁ ବିନ୍ଦୁ ଜଳ ଶୋଷିନିଏ । ତା ମୁଣ୍ଡ ଭିତରଟା ଗୋଳମାଳିଆ ହୋଇଗଲା । ବନ୍ଧୁମାନେ ବାଧ୍ୟ କରି ତା'ଠାରୁ ଅଫିସ୍ କ୍ୟାସ୍‌ରୁ ଟଙ୍କା ଆଣିବା ପାଇଁ ଗୋଟିଏ ଦରଖାସ୍ତ ଲେଖାଇ ନେଲେ । ସେ ସାଇକଲ ନେଇ ନଈବନ୍ଧ ଆଡେ ଋଲିଲା ।

ତା ମୁଣ୍ଡଟା ଖୁବ୍ ଜୋର୍‌ରେ ଘୁରୁଥିଲା । ନଈ କୂଳର ଥଣ୍ଡାପବନ ବାଜିବାରୁ ତା ଆଖି ମାଡ ମାଡ ପଡ଼ିଲା । ସେ ଜୋତା ମୋଜା ଖୋଲି ପାଖରେ ଥୋଇ ଶୋଇପଡିଲା । ବହୁତ ଦିନ ପୂର୍ବରୁ ଦେଖିଥିବା ଗୋଟିଏ ସିନେମା "ମହା-ଭାରତ"ର ଗୋଟିଏ ଦୃଶ୍ୟକୁ ସେ ସ୍ୱପ୍ନ ଦେଖିଲା । ସପ୍ତରଥୀ ସଙ୍ଗରେ ଯୁଦ୍ଧରତ ଅଭିମନ୍ୟୁ । ଧନୁ,ଖଣ୍ଡା, ଢାଲ ସବୁ ହରାଇସାରି ରଥଚକ ଓପାଡ଼ ଆକ୍ରମଣରତ ବୀର ଅଭିମନ୍ୟୁ । ସପ୍ତରଥୀଙ୍କର ଘନ ଘନ ଆକ୍ରମଣ ଅଭିମନ୍ୟୁ ଅନୋନ୍ୟପାୟ ହୋଇ ରଥ ଚକ ଟାକୁ ବୁଲାଇ ବୁଲାଇ ଫିଙ୍ଗି ଦେଲେ । ହଠାତ୍ ତାର ତନ୍ଦ୍ରା ତୁଟିଗଲା । ସେ ଦେଖିଲା ତା ହାତରୁ ଛିଟିକି ପଟେ ଜୋତା ପାଣିରେ ପଡଛି । ସେ ବୁଲି ଦେଖିଲା ହାତ ପାଖରେ ଆଉ ପଟକ ଜୋତା ତା ଆଡକୁ ଋହିଁ ଯେପରି ବିଦ୍ରୂପ କରୁଛି । ତାକୁ ଋରିଆଡ ଅନ୍ଧାର ଦେଖାଗଲା । ସେ ପୁଣିଥରେ ଆଖି ବୁଜି ଦେଲା ।

ଏଥର ସେ ଶୁଣି ପାରୁଥିଲା ମୁମୂର୍ଷ ଅଭିମନ୍ୟୁ ପ୍ରତି ସପ୍ତରଥୀମାନଙ୍କର ବିକଟାଳ ଅଟ୍ଟହାସ୍ୟ ।

●

Digitized by srujanika@gmail.com

# ଶ୍ରଦ୍ଧା

ଏଇ ସପ୍ତାହର ପୋଲିସ୍ ଏସ. ପି. ହିସାବରେ ଚାର୍ଜ ନେଇ ସାରିଲା ପରେ, ଚିନୁ ମାନେ ଚିନ୍ମୟ ପ୍ରଧାନ ବେଶ୍ ଚିନ୍ତିତ ହୋଇ ପଡ଼ିଲା । କାରଣ ତାର ଗାଁ ତାର ପିଲାଦିନର ସବୁ ସ୍ମୃତିର ମାଦକତା ଚାକ୍ଷି ପଦ୍ମପୁର, ଏହି ସହର ଠାରୁ ମାତ୍ର ପନ୍ଦର କିଲୋମିଟର ଦୂର । ତାର ଦଶ ବର୍ଷର ଚାକିରୀ କାଳ ମଧ୍ୟରେ ସେ ପ୍ରଥମ ଥର ପାଇଁ ଯେଉଁ ଜିଲ୍ଲାରେ ଏସ.ପି. ରୂପେ ପୋଷ୍ଟିଂ ପାଇଛି, ସେଇ ଜିଲ୍ଲାର ସଦର ମହକୁମା ତା ଗାଁ ଠାରୁ ଜମା ପନ୍ଦର କିଲୋମିଟର । ସେ ଜଏନ୍ କଲା ପରେ ଠିକ୍ କଲା ପ୍ରଥମେ ଗାଁ ଆଡ଼େ ଥରେ ବୁଲି ଆସିବ ।

ଗାଁରେ ପହଞ୍ଚି ସେ ପ୍ରଥମେ ତା ବାପାଙ୍କୁ ଦେଖାକଲା । ପିଲା ଦିନରୁ ମା'ଙ୍କୁ ହରାଇ ଏମ.ଏ. ପର୍ଯ୍ୟନ୍ତ ପଢ଼ି ଶେଷରେ ଆଇ.ପି:ଏସ୍ ପାଇ ପାରିଲା କେବଳ ତା ବାପାଙ୍କ ପାଇଁ । ଗୋଟିଏ ମଧ୍ୟବିତ୍ତ କୃଷକ ହେଲେ ମଧ୍ୟ ସେ ତାକୁ କୌଣସି ଅଭାବ ଆଗରେ ମୁଣ୍ଡ ନୁଆଁଇ ଦେଇ ନଥିଲେ । ଏଥର ସେ ବାପାଙ୍କୁ ସାଙ୍ଗରେ ନେଇଯିବ । ଜଣେ ବାପା ହିସାବରେ ତା ବାପା ତାଙ୍କ ଦାୟିତ୍ୱ ବେଶ୍ ଆଦର୍ଶର ସହିତ ନିଭେଇ ଦେଇଛନ୍ତି । ବର୍ତ୍ତମାନ ସେ ଚିନୁକୁ ଦାୟିତ୍ୱବାନ୍ ପୁଅର ଦାୟିତ୍ୱ ନିଭେଇବାକୁ ସୁଯୋଗ ଦେବା ଉଚିତ୍ ।

ଚିନୁ ଗାଁକୁ ଆସିଲେ ମନ୍ଦିରକୁ ପାଉ ନଯାଉ, ତାର ସ୍କୁଲ ଦିନର ସାରଙ୍କ ଘରକୁ ନିଶ୍ଚୟ ଯାଏ । ତା ପାଇଁ ସେଇଟାହିଁ ସବୁଠାରୁ ବଡ ମନ୍ଦିର । ସେଇ ମନ୍ଦିରର ଠାକୁରଙ୍କର ଶୁଭାଶିଷ ନ ମିଳିଥିଲେ ଅଶିକ୍ଷିତ ଚାଷୀ ପରିବାରର ଚିନୁ ଆଜି ଆଇ. ପି: ଏସ୍ ଅଫିସର ହୋଇପାରି ନଥାନ୍ତା । ସାର୍ ମାନେ ମୋହନ ବାବୁ ତା ପାଇଁ ଗୋଟିଏ ବିରାଟ ଆଦର୍ଶ ନୁହନ୍ତି ପ୍ରେରଣାର ଉତ୍ସ ମଧ୍ୟ । ଏ ଅଞ୍ଚଳର ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ହେଲେ ହେଁ ସେ ଅନ୍ୟାନ୍ୟ ସ୍ୱାଧୀନତା ସଂଗ୍ରାମୀଙ୍କ ପରି ସ୍ୱାଧୀନତା ପରେ ରାଜନୀତିରେ ଭାଗ ନ ନେଇ ଗାଁ ସ୍କୁଲର ଶିକ୍ଷକତାକୁ ଆବୋରି ନେଇଥିଲେ । ତାଙ୍କ ଠାରୁ କମ୍ ଯୋଗ୍ୟତା ସମ୍ପନ୍ନ ଲୋକମାନେ ବେଶ୍ ସମ୍ମାନ ଜନକ ସରକାରୀ ପଦବୀ ପାଇ ପାରିଥିଲେ । କିନ୍ତୁ ମୋହନ ବାବୁ ବି.ଏ. ପାଶ୍ କରି ମଧ୍ୟ ଶିକ୍ଷକତାକୁ ନିଜର ବୃତ୍ତି ଭାବରେ ସ୍ୱେଚ୍ଛାକୃତ ହୋଇ ବାଛି ନେଇଥିଲେ ।

Digitized by srujanika@gmail.com

ଚିନୁର କିଶୋର ବୟସର ଅଧିକାଂଶ ସ୍ମୃତି ଏକ ଘରର ଗଳି ପାଖରେ ସୀମାବଦ୍ଧ । ଚିନୁର ପ୍ରଥମ କବିତା ମୋହନ ସାର୍‌ଙ୍କୁ ହିଁ ପଢ଼ିବାକୁ ଦେଇଥିଲା । ମୋହନ ସାର୍ ତାକୁ 'ଷ୍ଟେପସ୍ ମେନ୍'ର 'ନାଓ ଏଣ୍ଡ ଏଟେନ୍' କଲମ ପଢ଼ିବାକୁ ବତାଇଥିଲେ । ଯେତେବେଳେ ଚିନୁ ଘରକୁ 'ଇଲେକ୍‌ଟ୍ରିସିଟି' ଯାଇନଥିଲା । ତେଣୁ ସେ ପଢ଼ିବା ପାଇଁ ସନ୍ଧ୍ୟାବେଳେ ସାର୍‌ଙ୍କ ଘରକୁ ହିଁ ଯାଉଥିଲା । ପର୍ବପର୍ବାଣି ପିଠାପଣା ଦିନ ଚିନୁକୁ ସାର୍‌ଙ୍କ ଘରୁ ଡକରା ଆସୁଥିଲା । ତାର ମାଟ୍ରିକ୍ ପରୀକ୍ଷା ସରିବାର ଅଳ୍ପଦିନ ପରେ ସେ ମାମୁଁ ଘରେ ଛୁଟି କାଟୁଥିଲା ବେଳେ ସେ ସାର୍‌ଙ୍କ ସ୍ତ୍ରୀ ମରିଯିବାର ଖବର ପାଇଥିଲା ।

ମାଟ୍ରିକ୍ ପାଶ୍ କରିବା ପରେ ସେ ସାର୍‌ଙ୍କ ପରାମର୍ଶରେ କଟକ ରେଭେନ୍‌ସା କଲେଜରେ ନାଁ ଲେଖାଇଲା । କଲେଜ ଦିନମାନଙ୍କରେ ସେ ପାଠ ପଢ଼ା ଉପରେ ଗାଁ ଯିବାକୁ ବହୁତ କମ୍ ସମୟ ପାଉଥିଲା । କିନ୍ତୁ ଯେତେବେଳେ ବି ଗାଁକୁ ଯାଉଥିଲା ସେ ସାର୍‌ଙ୍କ ଘରେ ଅଧିକାଂଶ ସମୟ କଟାଉ ଥିଲା । କିନ୍ତୁ ସାର୍‌ଙ୍କ ସାଙ୍ଗରେ ଚିଠିପତ୍ର ଦିଆନିଆ ଚାଲିଥିଲା । ତାର ଥାର୍ଡ଼ ଇୟର ବର୍ଷ ସେ ସାର୍‌ଙ୍କ ଝିଅ ବିନୀର ବାହାଘର ଖବର ପାଇ ଗାଁକୁ ଯାଇଥିଲା । ବିନୀ ତାଠାରୁ ଗୋଟିଏ ବର୍ଷ ସାନ ଆଉ ସେ ତାକୁ ସାନ ଭଉଣୀ ପରି ଦେଖେ । ବିନୀର ଗୋଟିଏ ଉଚ୍ଚ ବେତନ ଭୋଗୀ ମିଲିଟାରୀ ଅଫିସରଙ୍କୁ ବାହା ହେବାର ଖବରରେ ସେ ବହୁତ ଖୁସି ହୋଇ ଯାଇଥିଲା ।

ବି.ଏ. ପରୀକ୍ଷା ପରେ ସେ ଯେତେବେଳେ ଗାଁକୁ ଗଲା ସେ ମୋହନ ସାର୍‌ଙ୍କୁ ଗୋଟିଏ ଅଲଗା ରୂପରେ ଦେଖିଲା । ତାଙ୍କ ମୁହଁରେ ଆଗର ସେଇ ଶିଶୁ ସୁଲଭ ହସ ଆଉ ନଥିଲା । ବୋଧ ହୁଏ ବିନୀ ଚାଲିଗଲେ ପରେ ଏକୁଟିଆ ଅନୁଭବ କରୁଥିବେ । କିଛିଦିନ ପରେ ପୁଣି ମନ ବୁଝିବ ।

ଚାକିରୀ କରିବାର ଦୁଇ ତିନି ବର୍ଷ ପରେ ସେ ଯେତେବେଳେ ଗାଁକୁ ଯାଏ ଦେଖେ ସାର୍ ଆଉ ଆଗର ମୋହନ ସାର୍ ହୋଇ ନାହାନ୍ତି । ସତେ ଯେମିତି ସେ କେଉଁ ଏକ ଦାରୁଣ ଦୁଃଖରେ ଘାରି ହେଉଛନ୍ତି । ଆଉ ସେ ଦୁଃଖକୁ ଭୁଲିବା ପାଇଁ ସେ ଅଧିକାଂଶ ସମୟ ସ୍କୁଲରେ ପିଲାମାନଙ୍କ ସାଙ୍ଗରେ କଟାଉଛନ୍ତି ।

ସେ ପଚାରିଲା "ସାର୍ ବିନୀ ଆସିଥିଲା କି ? ସାର୍ କହିଲେ "କେଉଁଠିକି, ମୋ ଘରକୁ ? ମୋ ଘରଟା ପରା ଗୋଟିଏ 'ବେଗରସ୍ ହାଉସ୍' ପରି ଦେଖା ଯାଉଛି ।"

ଚିନୁ ବୁଝି ପାରିଲା ଯେ ବିନୀ ବୋଧେ ଏମିତି କିଛି କହିଛି ଯାହା ଫଳରେ ସାର୍‌ଙ୍କ ମନ ଦୁଃଖ ହୋଇଛି ।

Digitized by srujanika@gmail.com

ତାର କିଛିଦିନ ପରେ ସେ ଗୋଟିଏ 'କନ୍‌ଫରେନସ୍‌'ରେ ଯୋଗଦେବା ପାଇଁ ଦିଲ୍ଲୀ ଯାଇଥିଲା । ସେଠି ବିନୀ ଆଉ ତା ବର ସହିତ ଦେଖା ହୋଇଥିଲା । ବିନୀ ତାକୁ ତା ଘରକୁ ବୁଲାଇ ନେଇଥିଲା । ସେଠି ସେ ବିନୀକୁ ସାର୍‌ଙ୍କ କଥା କହିଲା ଆଉ ସାରଙ୍କ ମନ ପରିବର୍ତ୍ତନ ପାଇଁ କିଛିଦିନ ଏଠାକୁ ଆଣିବାକୁ କହିଲା ।

ଏ କଥାରେ ବିନୀ ଟିକିଏ 'ସିରିଏସ୍‌' ହୋଇଗଲା ଆଉ କହିଲା ବାପା ସେଇ ମରହଟ୍ଟା ଅମଳରେ ରହିଗଲେ । ବାହାଘର ପରେ ତାଙ୍କୁ ଏଠିକି ଆଣିଥିଲୁ । କିନ୍ତୁ ସେ ଅଦ୍ଭୁତ କାଣ୍ଡ ସବୁ କରି ବସିଲେ । ପାର୍ଟି ମାନଙ୍କରେ ନିଶା ନିବାରଣ ଉପରେ ଭାଷଣ ଦେଲେ । ନିଜେ ତ ହାତରେ ଖାଇଲେ କଣ୍ଟା ଚାମଚରେ ଖାଉଥିବା ଲୋକଙ୍କୁ ଗାଳି ଦେଲେ । ଏଠିକାର ପିଲାମାନଙ୍କ ପାଇଁ ସେ ଗୋଟିଏ କୌତୁକିଆ ବସ୍ତୁ ହୋଇଗଲେ ।

ବିନୀକୁ ଚିନୁ ପିଲାଦିନୁ ଦେଖୁଛି । ତାକୁ ଫ୍ରକ୍‌ ପିନ୍ଧିବାର ଦେଖିଲା ତାପରେ ଶାଢୀ ପିନ୍ଧିବାର ଦେଖିଲା । କିନ୍ତୁ କେବେ ସାଲୁଆର ପିନ୍ଧିବାର ଆଗରୁ ଦେଖି ନଥିଲା । ଏଠି ଆସି ପ୍ରଥମେ ଦେଖିଲା । ଯାହାହେଉ ବିନୀ ଖୁସିରେ ଅଛି । ଏଇ ବିନୀ ଯିଏ ଦିନେ ଦୁଇଜଣଙ୍କ ପାଇଁ ରୋଷେଇ କଲାବେଳେ ନାକେଦମ୍‌ ହୋଇଯାଉଥିଲା ଏବେ ବେଶ୍‌ ଶୋଭିତ ଗୃହିଣୀ ହେଲାଣି । ବିନୀର ସଂସାର ଦେଖି ଚିନୁ ବହୁତ ଖୁସି ହୋଇଗଲା । ଯାହାହେଉ ବିନୀ ଭଲରେ ଅଛି ।

କିନ୍ତୁ ସାର୍‌ ? ତାଙ୍କର କଣ ହେଲା ? ବିନୀ ଗୋଟିଏ ସୁନ୍ଦରିଆ ପଂଜୁରୀରେ ଶୁଆଟିଏ ରଖିଛି । ସେ ତାକୁ ପ୍ରତିଦିନ କଥା କହିବା ଶିଖାଏ ।

ପର ଥର ଯେତେବେଳେ ଚିନୁ ଗାଁକୁ ଗଲା ସେ ଦେଖିଲା ସାର୍‌ଙ୍କ ଅବସ୍ଥା ଆହୁରି ଖରାପ । ସେ ଯେତେବେଳେ ଚିନୁକୁ ଦେଖିଲେ ପିଲାଙ୍କ ପରି କାନ୍ଦ ଉଠିଲେ, କହିଲେ "ସ୍ୱାଧୀନତା ପରେ ସାହେବମାନଙ୍କୁ ଏ ଦେଶକୁ ତଡ଼ ଦେଇଛୁ ବୋଲି ଭାବି ମୁଁ ଦୁଆର ଝରକା ଖୋଲି ନିଶ୍ଚିନ୍ତରେ ଶୋଇପଡ଼ଥିଲି । କିନ୍ତୁ ନିଦ ଭାଙ୍ଗିବାରୁ ଦେଖିଲି ଗୋଟିଏ ସାହେବ ଆସି ମୋ ଝିଅକୁ ମୋଠାରୁ ନେଇଯାଇଛି ।"

ଏଥର କିନ୍ତୁ ସେ ସାରଙ୍କ ଘରକୁ ଗଲାବେଳେ ସ୍କୁଲ ପାଖରେ ପାଟିଗୋଳ ଶୁଣି ସ୍କୁଲ ଭିତରକୁ ଗଲା । ସେଠି ଦେଖିଲା ତାରି ଗୋଟିଏ ସ୍କୁଲ ବେଳର ସାଙ୍ଗ ଭିତୁ, ଯିଏ ବର୍ତ୍ତମାନ ଏକଜିକ୍ୟୁଟିଭ ଇଂଜିନିୟର ଅଛି ସାର୍‌ଙ୍କ ଉପରେ ରାଗିଯାଇ ଗାଳି ଦେଉଛି । ସେ ଘଟଣାଟାକୁ ବୁଝିବାକୁ ଯାଇ ଜାଣିଲା ଯେ କିଛି ଦିନ ତଳେ ଟ୍ରାନସ୍‌ଫର ହେବାରୁ ଭିତୁ ତା ପିଲାମାନଙ୍କୁ ଗାଁରେ ଛାଡଦେଇ ଯାଇଥିଲା । ତା ପୁଅ ଗାଁ ସ୍କୁଲରେ ପଢୁଥିଲା । କଣ ଗୋଟିଏ ବଦ୍‌ମାସି କରିବାରୁ ସାର୍‌

Digitized by srujanika@gmail.com

ତାଙ୍କୁ ବେତରେ ବାଡେଇଲେ । ସେ କଥା ଶୁଣି ଜିତୁ ପାଟି କରୁଛି । ଚିନୁ ତାଙ୍କୁ ବୁଝାଇବାକୁ ସେ କହିଲା "ତୁ ଜାଣିନୁ ଗୋଟିଏ ସାଡସଟ୍ ହାତରେ ମୁଁ ମୋ ପୁଅର କ୍ୟାରିଅର ଛାଡ ଦେବାକୁ ଚାହୁଁନି ।"

ଚିନୁ ତାଙ୍କୁ ବୁଝାଇଲା "ଆପଙ୍କୁ ତ ପୁଣି ଏଇ ସାର୍ ବେତରେ ବାଡେଇ ପାଠ ପଢଉଥିଲେ । ତୁତ ପୁଣି ମଣିଷ ହେଲୁ, ମୁଁ ତ ପୁଣି ମଣିଷ ହେଲି" । ଜିତୁ ବୁଝିବା ଅବସ୍ଥାରେ ନଥିଲା । ସେ କେସ୍ କରିବ ବୋଲି ଧମକାଇ ଥିଲା ।

ଚିନୁ ପାଟି କରି ସମସ୍ତଙ୍କ ଆଗରେ ଜିତୁର ମୂର୍ଖାମିକୁ ଗାଳିଦେବାକୁ ଚାହୁଁଥିଲା । କିନ୍ତୁ ତାର ଜିମୀ ଘର ପଂଜୁରିରେ ଥିବା ଶୁଆ କଥା ମନେ ପଡଗଲା । ଶୁଆଟି ଯେତେବେଳେ ତାର ନିଜ ଭଷା କହେ ସମସ୍ତେ କହନ୍ତି ସେ ବୋବାଉଛି । କିନ୍ତୁ ସେ ଯେତେବେଳେ ତାକୁ ଘୋଷା ଯାଉଥିବା କଥା କହେ ସମସ୍ତେ କହନ୍ତି ଯେ ସେ କଥା କହୁଛି ।

ଏଇ ଘଟଣାର ପରେ ପରେ ତାକୁ ଗୋଟିଏ ଜରୁରୀ କାର୍ଯ୍ୟରେ ଆଠ ଦଶ ଦିନ ପାଇଁ ଓଡଶା ବାହାରକୁ ଯିବାକୁ ପଡଲା । ସେଠାରୁ ଫେରି ସେ ଗାଁକୁ ଗଲାବେଳେ ଟାଁ ମୁଣ୍ଡରେ ଶୁଣିଲା ଯେ ମୋହନ ସାର୍ ଆତ୍ମହତ୍ୟା କରିଛନ୍ତି। ସେ ସାଙ୍ଗେ ସାଙ୍ଗେ ତାଙ୍କ ଘରକୁ ଗଲା । ସେଠାରେ ବହୁତ ଲୋକ ଜମିଥିଲେ ଏବଂ ପୋଲିସ୍ ଇନିସ୍ପେକ୍ଟର ମଧ୍ୟ ଥିଲେ । ସେ ସେମାନଙ୍କ ଠାରୁ ବୁଝିଲା ଯେ ଜିତୁ ସାରଙ୍କ ବିରୁଦ୍ଧରେ କର୍ତ୍ତୃପକ୍ଷଙ୍କୁ ଲେଖିବାରୁ ସାର୍‌ଙ୍କୁ ଚାକିରୀରୁ ବାହାର କରିଦିଆଗଲା । ତା ପରେ ଆଜି ସକାଳୁ କେତେ ଜଣ ପିଲା ସାର୍‌ଙ୍କ ଘରକୁ ଆସି ଦେଖିଲେ ଦୁଆର ଭିତରୁ ବନ୍ଦ । ଡାକି ଡାକି କେହି ନ ଶୁଣିବାରୁ ସେମାନେ ସନ୍ଦେହ କଲେ । ଆଉ ଭିତରକୁ ପଶି ଦେଖିଲେ ସାର୍ ପଙ୍ଖାରେ ଦଉଡ ଲଗାଇ ଆତ୍ମହତ୍ୟା କରିଛନ୍ତି ।

ଚିନୁ ପାଟିକୁ ବାହାରି ପଡ଼ଲା 'ହି ହାଜ୍ ବିନ୍ ମର୍ଡରଡ୍' ଇନିସ୍ପେକ୍ଟର ଚମକି ଉଠି କହିଲେ "ନା ସାର୍ ଇନ୍‌ଭେଷ୍ଟିଗେସନ୍‌ରୁ ଜଣାପଡଛି ଯେ ଏଇଟା ଆତ୍ମହତ୍ୟା ।

ଚିନୁ ହଠାତ୍ ପ୍ରକୃତିସ୍ଥ ହୋଇଗଲା ଆଉ କହିଲା "ନା ନା ମୁଁ ଏହାଙ୍କ କଥା କହୁନି ମୁଁ ମୋହନ ଦାସ୍ କରମ୍‌ଚନ୍ଦ ଗାନ୍ଧୀଙ୍କ କଥା କହୁଛି । ଆଜି ଜାନୁଆରୀ ୩୦ ତାରିଖ କି ନା ।"

●

Digitized by srujanika@gmail.com

# ଦୂର ପରନ୍ତ

ଚିଠିଟାକୁ ମୁଁ ଅପେକ୍ଷା କରିଥିଲି । ଜିତୁ ମତେ ଆଗରୁ କେବଲ୍ କରି ଜଣାଇ ଦେଇଥିଲା ଚାର୍ଲସ୍‌ର ଆସିବା ସମ୍ପର୍କରେ । ଜିତୁ ମୋ ସାଙ୍ଗ । ଏବେ ଆମେରିକାରେ ରିସର୍ଚ୍ଚ କରୁଛି । ଚାର୍ଲସ୍ ତା ପ୍ରଫେସରଙ୍କ ପୁଅ । ପାଞ୍ଚ ଛଅ ମାସ ପାଇଁ ଭାରତ ଆସିଥାଏ । ସେ ଜଣେ ସାହିତ୍ୟିକ । ତେଣୁ ଜିତୁ ତାଙ୍କୁ ମୋ ପାଖକୁ ପଠାଇଛି ।

ଏଇ ଚିଠିଟା ଚାର୍ଲସ୍ ଦେଇଛି । ଦିଲ୍ଲୀରୁ । ସେ ସୋମବାର ଦିନ ଭୁବନେଶ୍ୱରରେ ପହଞ୍ଚିବ । ମୋ କାମ ହେଲା ତାକୁ ଭୁବନେଶ୍ୱର ରେଲୱେ ଷ୍ଟେସନରୁ ରିସିଭ କରି ପୁରୀ, କୋଣାର୍କ, ଚିଲିକା ଇତ୍ୟାଦି ଦେଖାଇ, ପୁଣି ଥରେ ଟ୍ରେନରେ ବସାଇ ଦେଲେ ସେ ବମ୍ବେ, ଗୋଆ ଇତ୍ୟାଦି ବୁଲିବାକୁ ଯିବ ।

ଷ୍ଟେସନରେ ଚାର୍ଲସ୍‌ଙ୍କୁ ଚିହ୍ନିବାରେ କୌଣସି ଅସୁବିଧା ହେଲାନି । ସେଦିନ ନୀଳାଚଳ ଏକ୍ସପ୍ରେସରୁ ଭୁବନେଶ୍ୱରରେ ଓହ୍ଲାଇଥିବା ଯାତ୍ରୀମାନଙ୍କ ଭିତରେ ସେ ଏକମାତ୍ର ଗୋରା ଲୋକ ଥିଲା ।

ମୁଁ ତା' ସହିତ ଆଲୋଚନା କରି ଗୋଟିଏ ପ୍ଲାନ କରି ନେଲି । ସେଇ ପ୍ଲାନ ଅନୁସାରେ ତାକୁ ଗୋଟିକ ପରେ ଗୋଟିଏ ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଉଥାଏ । ଏମିତି ଦିନେ ପୁରୀ ବଡ ଦାଣ୍ଡରେ ବୁଲୁ ବୁଲୁ ସେ ବିକ୍ରୀ ହେଉଥିବା ପଥର ମୂର୍ତ୍ତିଗୁଡ଼ିକ ଦେଖିଲା । ସେଠାରୁ ଗୋଟିଏ ବଡ଼ କୋଣାର୍କ ଚକ କିଣିବାକୁ ଚାହିଁଲା ।

ପୁରୀରେ ଟିନୁ ବୋଲି ଗୋଟିଏ ସାଙ୍ଗ ରହେ । ତାର ବାପା ଏଇ ପଥର କାମ କରନ୍ତି । ତାଙ୍କର ଶିଳ୍ପୀ ହିସାବରେ ଏ ଅଞ୍ଚଳରେ ଭଲ ନାଁ ଅଛି । ତାଙ୍କୁ ଆମେ ବିଶୁ ମଉସା ବୋଲି ଡାକୁ । ଚାର୍ଲସ୍‌ଙ୍କୁ ମୁଁ ତାଙ୍କ ପାଖକୁ ନେଇ ଗଲି । ତାଙ୍କର ଚାର୍ଲସ୍ ପ୍ରତି ବ୍ୟବହାର ଆଉ କାମଚଳା ଇଂଲିସି ଶୁଣି ମୁଁ ଅନୁମାନ କରିନେଲି ଯେ ଚାର୍ଲସ ତାଙ୍କର ପ୍ରଥମ ବିଦେଶୀ ଗରାଖ ନୁହେଁ । ଚାର୍ଲସ ସାଙ୍ଗରେ ତାଙ୍କର ବେଶ୍ ଭଲ ଜମିଗଲା । ତାଙ୍କର ତିଆରି ଗଢ଼ିଥିବା ମୂର୍ତ୍ତିମାନ ଦେଖି ଚାର୍ଲସ ମୁଗ୍ଧ ହେଇଗଲେ । ସେ କହିଲା ଆର୍ଟ ଗ୍ୟାଲେରୀ କିମ୍ବା ପ୍ରଦର୍ଶନୀ ଅପେକ୍ଷା ଆର୍ଟିଷ୍ଟମାନଙ୍କ ୱାର୍କସପ ଦେଖିବାକୁ ବେଶୀ ଭଲଲାଗେ ।

Digitized by srujanika@gmail.com

ଋର୍ଲସ ପାଇଁ ଗୋଟିଏ ବଡ଼ କୋଣାର୍କ ଚକ ବରାଦ କରିବାକୁ ଋହିଁଲି । ବିଶୁ ମଉସାଙ୍କର କିନ୍ତୁ ଗୋଟିଏ ଅସୁବିଧା ଥାଏ । ତାଙ୍କ ଝିଅ ବିନୀର ବାହାଘର ହଠାତ୍ ଠିକ୍ ହୋଇଥାଏ । ଋରିଦିନ ପରେ ବାହାଘର । ତେଣୁ ଅନ୍ତତଃ ପନ୍ଦର ଦିନ ପରେ ସେ କାମ ଆରମ୍ଭ କରିବେ । ସବୁ ସବୁ ପ୍ରାୟ ଦି' ମାସ । ଋର୍ଲସ ମୋ ସାଙ୍ଗରେ ଆଲୋଚନା କରି ସ୍ଥିର କଲା ଯେ ସେ ବମ୍ବେ, ଗୋଆ ଇତ୍ୟାଦି ବୁଲି ଫେରିଲା ବେଳେ କୋଣାର୍କ ଚକଟା ନେଇ ଆମେରିକା ଫେରିଯିବ । କଥାବାର୍ତ୍ତା ସରିଲା ପରେ ବିଶୁ ମଉସା ଋର୍ଲସଙ୍କୁ ବିନୀ ବାହାଘରକୁ ମୋ ସାଙ୍ଗରେ ଆସିବାକୁ ଅନୁରୋଧ କଲେ । ଋର୍ଲସ୍ ବି ସାଙ୍ଗେ ସାଙ୍ଗେ ରାଜି ହୋଇଗଲା ।

ବାହାଘର ଦିନ ଋର୍ଲସ ସବୁ ଟିକିନିଖି ଦେଖୁଥାଏ । ବାହାଘର ସମ୍ପର୍କରେ ବିଭିନ୍ନ ପ୍ରଶ୍ନ ପଋରି ଋଲିଥାଏ । ମୁଁ ତାକୁ ବୁଝାଇବାକୁ ଚେଷ୍ଟା କରୁଥାଏ । ବରଯାତ୍ରୀମାନେ କାହିଁକି ଆସନ୍ତି, ନିର୍ବନ୍ଧ କାହିଁକି ହୁଏ, ଏମିତି କେତେ କଥା । ଏହିଭଳି କଥା ପଡ଼ଥିଲା ବେଳେ ଜଣେ ଭଦ୍ରବ୍ୟକ୍ତି ଯେତେବେଳେ କହିଲେ ଯେ ତାଙ୍କ ବାହାଘର ପୂର୍ବରୁ ତାଙ୍କ ସ୍ତ୍ରୀକୁ କେବେହେଲେ ଦେଖି ନଥିଲେ, ଋର୍ଲସ ବିଶ୍ୱାସ କରିବାକୁ ନାରାଜ । ସେ ଯୁକ୍ତି କଲା ଯଦି ସେ ଝିଅଟା ତାଙ୍କର ପସନ୍ଦ ହୋଇନଥାନ୍ତା ତାକୁ ବୁଝାଇ ଦିଆଗଲା ଯେ ନିଜେ ନଦେଖିଲେ କଣ ହେଲା, ବରର ପରିବାର ବନ୍ଧୁବାନ୍ଧବ ତ ଦେଖାଦେଖି କରି ଠିକ୍ କରନ୍ତି । ଯେମିତି ଖେଳ ହେଲାବେଳେ ଜଣେ ତୃତୀୟ ପକ୍ଷ ରେଫରୀ ରହନ୍ତି, ସେମିତି ଏଠି ତୃତୀୟ ପକ୍ଷମାନେ ବରକନ୍ୟା ମ୍ୟାଚ୍ କରନ୍ତି ।

ମୁକୁଟ, ହୋମ, ହାତଗଣ୍ଠି, ଏସବୁ ଦେଖି ଋର୍ଲସ ଖୁବ ଆଶ୍ଚର୍ଯ୍ୟ ହୋଇ ଯାଉଥାଏ । ତାକୁ ବୁଝାଇଦେଲୁ ଯେ ଏସବୁ ଆମ ରିଚୁଆଲସ । ଋର୍ଲସ ସବୁ ତା ଡାଇରୀରେ ଲେଖିପକାଉଥାଏ । ମତେ ସେ କହିଲା ତା ଆସନ୍ତା ଉପନ୍ୟାସର ବ୍ୟାକଗ୍ରାଉଣ୍ଡରେ ଇଣ୍ଡିଆନ ଯୋଡ଼ାଇବାକୁ ରଖିବ ।

ଯ୍ୱା ଭିତରେ ଯୌତୁକରେ ଦିଆଯିବାକୁ ଥିବା ସ୍କୁଟରକୁ ନେଇ ଝଗଡ଼ା ଲାଗିଗଲା । ବରପକ୍ଷ ରାଗିଯାଇ ଗାଳି ଦେଉଥାନ୍ତି , ବିଶୁ ମଉସା, ବିନୁ ଆଉ କନ୍ୟା ପକ୍ଷର ଅନ୍ୟମାନେ ବୁଝାଉଥାନ୍ତି ।

ଋର୍ଲସ ଆଶ୍ଚର୍ଯ୍ୟ ହୋଇ ମତେ ପଋରିଲା, ୟେ କଣ । ମୋର ଆଉ କିଛି ଉପାୟ ନଥିଲା । ମୁଁ କହିଲି, ''ଦିସ୍ ଇଜ୍ ଅଲସୋ ଏ ରିଚୁଆଲ । ଆଶ୍ଚର୍ଯ୍ୟ ହୋଇ ସେ କହିଲା ''ବଟ ଇଟ୍ ଲୁକ୍ସ୍ ସୋ ରିଅଲ !'' ମୁଁ ତାକୁ ଡେକୋରେସନ ଦେଖାଇବା ବାହାନାରେ ବାହାରକୁ ନେଇଗଲି ।

ବାହାଘର ପରେ ଆମେ ଫେରି ଆସିଲୁ । ଋର୍ଲସଙ୍କୁ କୋଣାର୍କ ଏକ୍ସପ୍ରେସରେ ବସାଇଦେଲି । ସେ ଦୁଇମାସ ପରେ ଫେରି ଚକଟା ନେଇଯିବ ବୋଲି କହିଲା ।

Digitized by srujanika@gmail.com

ଘରିମାସ ପରେ ଗ୍ରଲସ ଫେରିଲା । ମୁଁ ତାଙ୍କୁ ବିଶୁ ମଉସାଙ୍କ ଘରକୁ ନେଇଗଲି । ଯା ଭିତରେ ମୁଁ ତାଙ୍କ ଖବର କିଛି ରଖିପାରି ନଥିଲି । ଆମେ ଗଲାବେଳେ ବିଶୁ ମଉସା ତାଙ୍କ ଦାଣ୍ଡ ଘରେ ବସିଥିଲେ । ଗ୍ରଲସ୍ ତାଙ୍କୁ ଦେଖି ଦେଖି ପଗରି ଦେଲା "ହାଓ ଇଜ ଆଓ୍ୱାର ୟଙ୍ଗ ଫ୍ରାଇଡ୍" । ଏକଥା ଶୁଣି ବିଶୁ ମଉସା ପିଲାଙ୍କ ପରି ଭେ ଭେ ହୋଇ କାନ୍ଦ ଉଠିଲେ । ଆମେ କିଛି ବୁଝିପାରିଲୁନି । ଗ୍ରଲସ ମୋ ମୁହଁକୁ ଚାହିଁଥାଏ, ମୁଁ ତା ମୁହଁକୁ ଚାହିଁଥାଏ । ଏଇ ସମୟରେ ଚିନୁ ଆସି ପହଞ୍ଚିଲା । ସେ ମୋତେ ଅଲଗା ଘରକୁ ଡାକିନେଇ ଘଟଣାଟା କହିଲା ।

ବିନୀ ବାହାଘର ପରେ ଯୌତୁକକୁ କେନ୍ଦ୍ର କରି ତା ଶାଶୁଘରେ ବହୁ ଅସନ୍ତୋଷ ଦେଖା ଯାଇଥିଲା । ସେମାନେ ବିନୀ ପ୍ରତି ନାନା ପ୍ରକାର ଦୁର୍ବ୍ୟବହାର କରୁଥାନ୍ତି । କିଛିଦିନ ତଳେ ଏମାନେଖବର ପାଇଲେ ଯେ ବିନୀ ମରିଯାଇଛି । ତାଙ୍କୁ ଭର ଦେଇଥିବାରୁ ଦୁର୍ବଳ ହୋଇ ପଡଥିଲା । ହାର୍ଟଫେଲ କରିଗଲା । ଚିନୁ କିନ୍ତୁ ଜୋର ଦେଇ କହୁଥାଏ ଯେ ବିନୀ ମରିନି, ତାକୁ ମାରିଦିଆ ହୋଇଛି । ଏଇଟା ଗୋଟେ ଡାଉରୀ ଡେଥ୍ । ମୁଁ ହତବାକ୍ ହୋଇଯାଇଥିଲି ।

ବିଶୁ ମଉସା ସେମିତି ଭେ ଭେ ହୋଇ କାନ୍ଦୁଥାନ୍ତି । ଚ୍ରଲସ ପଚାରୁଥାଏ "ଇଜ ସି ଅଲରାଇଟ ?" ହାଓ ଇଜ୍ ସି ? ମୁଁ ଆଉ କଣ ଉତ୍ତର ଦେବି । ଏହି ସମୟରେ ଚିନୁ ତା ଚକଟା ଆଣି ପହଞ୍ଚାଇଲା । ତାର ଫିନିସିଙ୍ଗ ସରି ନଥାଏ । କାମ ଟିକିଏ ଟିକିଏ ବାକିଥାଏ । ଚିନୁ କହିଲା, "ବାପା ଏଇଟାକୁ ଫିନିସିଙ୍ଗ ଦେଇ ପାରିଲେନି । ଏଇ ଖବର ପାଇଲା ପରେ ତାଙ୍କ ମୁଣ୍ଡ ଠିକ୍ ରହିଲାନି ।"

ଗ୍ରଲସ ମତେ ଫେରିଲାବେଳେ ବାଟରେ ପଚାରିଲା "ହ୍ୱାଇ ଡଡ ନଟ୍ ହି ଫିନିସ୍ ଇଟ ? ମୁଁ କହିଲି "ସୋ ହ୍ୱାଟ୍ ଇଟ ଲୁକ୍ସ ସୋ ନାଚୁରାଲ, ଇଟ ରିଜେମ୍ବଲସ ଦି ବ୍ରୋକନ କୋଣାର୍କ ହ୍ୱିଲ ।"

ଚ୍ରଲସ କିନ୍ତୁ ବୁଝିବାକୁ ରାଜି ନୁହେଁ । ସେ କହିଲା, "ବଟ ଇଟ କୁଡ ହାଭ ବିନ ଏ ମାଷ୍ଟର ପିସ ।" ମୋର ଆଉ କିଛି କହିବାର ନଥିଲା । ମୁଁ ବି ଜାଣିଥିଲି ଏଇଟା ଗୋଟିଏ ମାଷ୍ଟର ପିସ ହୋଇଥାନ୍ତା । ହେଲେ କଣ ହେବ, ନିଜେ ବିଶ୍ୱକର୍ମାତ ଜଗନ୍ନାଥଙ୍କୁ ଅଧାଗଢା ରଖିଦେଇଥିଲେ, ଆଉ ବିଶୁ ମଉସା ଅଧିକା କଣ କରିଥାନ୍ତେ ?..... ...

●

Digitized by srujanika@gmail.com

# ମୃତ୍ୟୁର ଆଲିଙ୍ଗନ

ପରୀକ୍ଷାକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ଘୁଞ୍ଚାଇ ଦିଆଗଲା । ହଷ୍ଟେଲ ଖାଲି କରିବା ପାଇଁ ନୋଟିସ ଦିଆଗଲା । ପାଖଆଖ ପିଲାସବୁ ଦିନେ ଦୁଇଦିନ ଭିତରେ ନିଜ ନିଜ ଘରକୁ ପଳେଇଲେ । ଆମେ ସବୁ ଯେତେ ଓଡ଼ିଶା, ମଣିପୁର ଆନ୍ଧ୍ର ଇତ୍ୟାଦି ଦୂର ଆଡର ଛାତ୍ରଥିଲୁ, ଭାରି ଅସୁବିଧାରେ ପଡ଼ିଲୁ । ଏକେ ତ ସମସ୍ତଙ୍କ ପାଖରେ ଘରକୁ ଆସିବା ପାଇଁ ଟଙ୍କା ନଥାଏ, ତା ସାଙ୍ଗରେ ପୁଣି ଟ୍ରେନରେ ରିଜର୍ଭେସନର ସମସ୍ୟା । ଚଣ୍ଡିଗଡରେ ରହିବାବି ନିରାପଦ ନୁହେଁ । ଯେଉଁଠି ରାସ୍ତାଘାଟରେ ବୋମା ଫୁଟୁଛି, ବସ୍ ଭିତରୁ ଲୋକଙ୍କୁ ବାହାରକୁ ଟାଣି ଆଣି ଗୁଳିରେ ମାରି ଦିଆଯାଉଛି, ସେଠି ଇଉନିଭରସିଟି କ୍ୟାମ୍ପସ ବାହାରେ ରହିବା ପାଇଁ ଆମର ସାହସ ହେଉନଥାଏ । ଏତିକି ବେଳେ ମୋ ସାଙ୍ଗ ଜିତୁ ଘରୁ ୫୦୦ ଟଙ୍କାର ମନିଅର୍ଡର ଆସି ପହଞ୍ଚିଲା । ଇଉନିଭରସିଟି ସାଇନ୍ ଡାଇ ହେବାର ଖବର ଟେଲିଭିଜନ୍ ର ଶୁଣି ତା ବାପା ସାଙ୍ଗେ ସାଙ୍ଗେ ଟଙ୍କା ପଠାଇଥିଲେ । ଆମର ଜିନିଷପତ୍ର ସବୁ ଆମ ଡିପାର୍ଟମେଣ୍ଟର ଜଣେ ଲେକ୍ଚରରଙ୍କ ଘରେ ରଖି ଆମେ ସେଇଦିନ ଦିଲ୍ଲୀ ପଳାଇ ଆସିଲୁ । ଦିଲ୍ଲୀ ଷ୍ଟେସନ୍ ରେ ଭାଗ୍ୟକୁ ନୀଳାଚଳ ଏକସ୍‌ପ୍ରେସରେ ରିଜରଭେସନ ମିଳିଗଲା ।

ସେମିତି ପ୍ଲାଟଫର୍ମରେ ରାତି କଟାଇ ସକାଳୁ ସକାଳୁ ଟ୍ରେନ୍ ଧରିଲୁ । ରିଜରଭେସନ ଚାର୍ଟରୁ ଦେଖିନେଲୁ ଯେ ଆମ ପାଖରେ ଗୋଟିଏ ପରିବାରର ତିନୋଟି ସିଟ ରିଜର୍ଭ ଅଛି । ମିଷ୍ଟର ହୃଷୀକେଶ ମଲ୍ଲିକ ମିସେସ ମଲ୍ଲିକ, ଏଣ୍ଡ ମିସ ମଲ୍ଲିକ । ନାଁରୁ ଅନୁମାନ କରିନେଲୁ ବୋଧେ ଓଡ଼ିଆ ହେଇଥିବେ । ଖୁସି ଲାଗିଲା ଯାହାହେଉ, ଓଡ଼ିଆରେ କଥାବାର୍ତ୍ତା କରିହେବ । ପରିବାରଟି ମେଳାପି ହେଇଥିଲେ ୩୫ ଘଣ୍ଟାରଯାତ୍ରାକଷ୍ଟ ଜଣା ପଡିବନି ।

ଟ୍ରେନ ଛାଡିବ ଛାଡିବ ହେଉଥାଏ ସେମାନେ ଆସିଲେ । ସେମାନେ କିନ୍ତୁ ଚାରିଜଣ ଥାଆନ୍ତି । ତିନିଜଣ ମଧ୍ୟ ବୟସ୍କ ଭଦ୍ରଲୋକ, ଜଣେ ଭଦ୍ର ମହିଳା, ଆଉଜଣେ ଉଣେଇଶି କି କୋଡ଼ିଏ ବର୍ଷର ଝିଅ । ସମସ୍ତେ ଭାରି ଉଦାସ ଜଣା ପଡୁଥାନ୍ତି । ଯେମିତି ଗୋଟିଏ ବଡଧରଣର ଝଡ ତାଙ୍କ ମୁଣ୍ଡ ଉପରେ ଦେଇ

Digitized by srujanika@gmail.com

ଏଇ କିଛି ଦିନ ହେଲେ ବୋଧିଯାଇଛି । ଭଦ୍ର ମହିଳା ଜଣଙ୍କର ଅସଜ୍ଜିତ ବେଶଭୂଷା, ମୁଖଗ୍ର ବାଳ, ଆଉ ଫୁଲ ଫୁଲ ଆଖିରୁ ଆମେ ଅନୁମାନ କରିନେଲୁ ବୋଧେ ସେ ଏଇ କେତେଦିନ ହେଲା ଖାଲି କାନ୍ଦୁଥିଲେ । ଝିଅଟିର ଅବସ୍ଥା ମଧ୍ୟ ସେଇଆ । ଝରକା ପାଖରେ ବସି ନିର୍ଲିପ୍ତ ଭାବରେ ବାହାରକୁ ଚାହିଁଥାଏ । ଭଦ୍ରବ୍ୟକ୍ତି ଦୁଇଜଣ କିନ୍ତୁ ମଝିରେ ମଝିରେ ପଦେ ଅଧେ ହିନ୍ଦିରେ କଥାବାର୍ତ୍ତା ହେଉଥାନ୍ତି ।

ଜିତୁ ଆଉ ମୁଁ ଓଡ଼ିଆରେ କଥା ହେଉଥିବାର ଶୁଣି ସେମାନଙ୍କ ଭିତରୁ ସାବନାରଙ୍ଗର ଭଦ୍ରଲୋକ ଜଣକ ଆମ ଆଡ଼କୁ ଲକ୍ଷ କରି ଓଡ଼ିଆରେ କହିଲେ "ଏଇ ଦୁଇଟି ସିଟ୍ ବୋଧେ ଆପଣଙ୍କର ?" ଆମେ ସମ୍ମତି ଦେବାରୁ ସେ କହିଲେ "ମୁଁ ହୃଷୀକେଶ ମଲ୍ଲିକ୍, ଏମାନେ ହେଲେ ମୋ ସ୍ତ୍ରୀ ଆଉ ଝିଅ । ଏଇ ଭଦ୍ରଲୋକ ଜଣକ ହେଲେ ଗୁଲାବ ସିଂ । ମୋ ସାଙ୍ଗ । ତାଙ୍କର ରିଜର୍ଭେସନ ନାହିଁ । ଆପଣମାନଙ୍କର ଆପତ୍ତି ନଥିଲେ ସେ ଏଠି ଆମ ସାଙ୍ଗରେ ଆଡ଼ଜଷ୍ଟ କରି ଚାଲିଯିବେ ।"

ଆମେ କହିଲୁ "ଆରେ ନା, ନା, ଏଥିରେ ଆପତ୍ତି କରିବାର କଣ ଅଛି । ବରଂ ଗପସପ କରି ରାସ୍ତା କଟିଯିବ ।"

ସନ୍ଧ୍ୟା ହେଇଗଲା । କିନ୍ତୁ ସେମାନଙ୍କ ସାଙ୍ଗରେ ଆମର କୌଣସି ପ୍ରକାର କଥାବାର୍ତ୍ତା ହେଇ ପାରିଲାନି । ଆମେ ବାଟରେ ମିଲ୍ ମଗାଇ ଖାଇଲୁ, ସେମାନଙ୍କୁ ବି ପଚାରିଲୁ, କିନ୍ତୁ ସେମାନେ ମନା କରିଦେଲେ । ଗୁଲାବ ସିଂ ମଝିରେ ମଝିରେ ଫଳ, ଆଇସକ୍ରିମ୍ ଆଣି ଦେଉଥାନ୍ତି । ସେମାନେ ବାଧ୍ୟ ହେଇ ନେଲାପରି ନେଉଥାନ୍ତି ।

ଟ୍ରେନ ମୋଗଲସରାଇରେ ପହଞ୍ଚିଲା । ଏଠି ଇଞ୍ଜିନ ବଦଳିବ । ଗାଡ଼ି ଠିକ୍ ଡିନର ଟାଇମରେ ପହଞ୍ଚିଥାଏ । ତେଣୁ ପ୍ରାୟ ଘଣ୍ଟେ ଦେଢ଼ଘଣ୍ଟା ଅଟକିବ । ଏଠାରେ ରେଲୱେ ରିଫ୍ରେସମେଣ୍ଟ ରୁମ୍‌ରେ ଭଲ ଖାଇବାକୁ ମିଳେ । ଜିତୁର ମୋର ସେଠିଯାଇ ରାତ୍ରି ଭୋଜନ ଖାଇବା ପାଇଁ ବାହାରିଲୁ । ସେମାନଙ୍କୁ ମଧ୍ୟ ଡାକିଲୁ । ସେମାନେ ଆଦୌ ମାଙ୍ଗିଲେ ନାହିଁ । ବହୁତ କହିଲା ପରେ ସେମାନେ ଡିନର ପ୍ୟାକେଟ୍ କିଣି ସେଇ ଟ୍ରେନରେ ଖାଇବାକୁ ରାଜି ହେଲେ । ସେମାନଙ୍କୁ ଡିନର ପ୍ୟାକେଟ୍ ଧରାଇ ଦେଇ ଆମେ ଖାଇବାକୁ ବାହାରିଲୁ । ଗୁଲାବ ସିଂ ବି ଆମ ସାଙ୍ଗରେ ଗଲେ ।

ସେ ଭରି ମେଳାପି ଲୋକ । ଖାଇବାକୁ ମଗାଇ ଦେଇ ଆମ ସାଙ୍ଗରେ ଗପ ଆରମ୍ଭ କରିଦେଲେ । ଏଇ ସୁଯୋଗରେ ଆମେ ତାଙ୍କୁ ହୃଷୀକେଶ ମଲ୍ଲିକଙ୍କର

Digitized by srujanika@gmail.com

ପରିବାର କଥା ପଚାରିଲୁ । ସେ ପ୍ରଥମେ କିଛି ସମୟ ଚୁପ୍ ରହି ଚାହିଁ ରହିଲେ । କିଛି କହିଲେ ନାହିଁ । ତାପରେ ଜଣେ ଭାବିଲେ କେଉଁଠି କାହାଣୀ କହିଲା ପରି ଆରମ୍ଭ କଲେ । "......ବୃଷୀର ବାପାଙ୍କ ନାଁ ନରେନ୍ଦ୍ର ନାରାୟଣ ମଲ୍ଲିକ୍ । ତାଙ୍କ ନାଁ ନାରୁ, ନାରୁଦା । ତାଙ୍କ ଘର ଓଡ଼ିଶାର କଟକ ଜିଲାର କୌଣସି ଏକ ଗାଁରେ । ତାଙ୍କୁ ଯେତେବେଳେ ନ ବର୍ଷ ବୟସ ସେତେବେଳେ ତାଙ୍କ ଅଞ୍ଚଳରେ ପ୍ରବଳ ବନ୍ୟା ହେଲା । ଘାଇଚେ ଭର୍ତ୍ତି ହିବାକୁ ହଠାତ୍ ଦିନେ ରାତିରେ ଏମାନେ ଶୋଇଥିବା ଅବସ୍ଥାରେ ପାଣି ମାଡ଼ିଗଲା । ଘରଦ୍ୱାର ଭାଙ୍ଗିଗଲା । କିଏ କୁଆଡ଼େ ଗଲେ ପତ୍ତା ମିଳିଲାନି । ଦୁଇଦିନ ପରେ ନାରୁକୁ ରିଲିଫ୍ ବୋଟ୍‌ରେ ଆସିଥିବା ସ୍ୱେଚ୍ଛାସେବୀମାନେ ଅଚେତ୍ ଅବସ୍ଥାରେ ଗୋଟିଏ ଚଣ୍ଡାଳକୁ ଉଦ୍ଧାର କଲେ । କିନ୍ତୁ ତା ବାପା କି ମା କାହାର ପତ୍ତା ମିଳିଲାନି ।

ନାରୁର ଜଣେ କକେଇ କଟକରେ ଚାକିରୀ କରୁଥାନ୍ତି । ସେ ତାଙ୍କ ପିଲାମାନଙ୍କୁ ନେଇ କଟକରେ ରହୁଥାନ୍ତି । ଖବର ପାଇ ସେ ଆସି ନାରୁକୁ ନେଇଗଲେ । ସେଠି ନାରୁକୁ ସ୍କୁଲକୁ ପଠେଇବେ କଣ, ତା କକେଇ ଖୁଡ଼ି ତାଙ୍କୁ ଘର କାମରେ ଲଗାଇ ଦେଲେ । ନାରୁ ଜାଣିପାରିଲା ପାଠ ପଢ଼ି ମଣିଷ କରିବାକୁ ନୁହେଁ, ଘରେ ଚାକର ହୋଇ କାମ କରିବାକୁ ତାକୁ ଏଠିକି ଅଣାଯାଇଛି । ନାରୁ ତାର ଭବିଷ୍ୟତ ବିଷୟରେ ଚିନ୍ତା କରିବାକୁ ଲାଗିଲା । ଏମିତି ଦିନେ ନାରୁ ତାର କକେଇ ଘରୁ ଲୁଚି ପଳେଇ ଆସି ଦିଲ୍ଲୀ ଯାଉଥିବା ଗୋଟିଏ ତୀର୍ଥଯାତ୍ରୀ ସ୍ପେଶାଲ ଟ୍ରେନ୍‌ରେ ବସିଗଲା । ସେତେବେଳେ ତା ପାଖରେ ଢ଼ିବାରେ ଢ଼ିବେ ମୁଢ଼ି ଛଡ଼ା ଆଉ କିଛି ନଥାଏ ।"

ଗୁଲାବ ସିଂ କିଛି ସମୟ ଚୁପ୍ ରହିଲେ । କିନ୍ତୁ ସେ ପାରିପାର୍ଶ୍ୱିକ ବାତାବରଣ ବିଷୟରେ ସଚେତନ ଥିବା ପରି ଆଦୌ ମନେ ହେଉ ନଥାନ୍ତି । ଲାଗୁଥାଏ ଯେମିତି ଅଳ୍ପଦିନ ତଳେ ଦେଖିଥିବା କୌଣସି ସିନେମାର କାହାଣୀ ମନେ ପକଉଛନ୍ତି । ହଠାତ୍ ପୁଣି କହିବା ଆରମ୍ଭ କଲେ .....

ସେତିକି ବେଳକୁ ମୋ ଜେଜେ ବାପା ଦିଲ୍ଲୀ ଯାଇଥାନ୍ତି ଆମର ବନ୍ଧୁ ବାନ୍ଧବଙ୍କ ଘରକୁ ନାରୁଦାଙ୍କ ସାଙ୍ଗରେ ତାଙ୍କର ଦେଖାହୁଏ ଦିଲ୍ଲୀ ଷ୍ଟେସନରେ । ତାପରେ ମୋ ଜେଜେଙ୍କ ସାଙ୍ଗରେ ନାରୁଦାଙ୍କର ପରିଚୟ ହେଲା ମୋର ମନେ ନାହିଁ, କିନ୍ତୁ ନାରୁଦା ଆମ ଘରେ ଆସି ରହିଲେ । ମୋ ବାପା ବି ସେତେବେଳେ ତାଙ୍କରି ବୟସର । ସେ ଦିଜଣ ଭାରି ସାଙ୍ଗ ହେଇଗଲେ । ନିଜ ବୁଦ୍ଧି ଆଉ ସଚ୍ଚୋଟ ପଣିଆରେ ନାରୁଦା ଆମ ଘରର ସମସ୍ତଙ୍କୁ ଆପଣାର କରିଦେଲେ । ଦିନ କେଇଟାରେ ସେ ଆମ ଘରର ଜଣେ ହେଇ ଗଲେ ।

Digitized by srujanika@gmail.com

ବୟସ ବଢ଼ିବାରୁ ମୋ ବାପାଙ୍କ ସାଙ୍ଗରେ ନାରୁଦା ମଧ୍ୟ ଆମର ଜମିବାଡ଼, ବ୍ୟବସାୟ ପତ୍ର ବୁଝିବାକୁ ଲାଗିଲେ । ମୋ ଜେଜେ ବାପାଙ୍କ ମୃତ୍ୟୁ ପରେ ମୋ ବାପା ଏକୁଟିଆ ହୋଇଗଲେ । ନାରୁଦା ସେତିକିବେଳେ ତାଙ୍କ ପାଖେ ପାଖେ ରହି ତାଙ୍କୁ ସାହାଯ୍ୟ କଲେ । ଭାରତ ସ୍ୱାଧୀନ ହେବାପରେ ପରେ, ଯେତେବେଳେ କେନ୍ଦ୍ର ସରକାର ଚଣ୍ଡିଗଡଠାରେ ଗୋଟିଏ ନୂଆ ସହର ଗଢ଼ିବାର ପରିକଳ୍ପନା କଲେ ସେତେବେଳେ ନାରୁଦା ମୋ ବାପାଙ୍କୁ ଗୋଟିଏ ନୂଆ ବ୍ୟବସାୟ କରିବାକୁ ପରାମର୍ଶ ଦେଲେ ସେଇଟା ହେଲା କଣ୍ଟ୍ରାକ୍ଟ । ଚଣ୍ଡିଗଡ ତିଆରି ଆରମ୍ଭ ହେବାପରେ ମୋ ବାପାଙ୍କ ପୁଞ୍ଜି ଆଉ ନାରୁଦାଙ୍କର ପରିଶ୍ରମରେ ଆମେ ବେଶ୍ ପଇସା କମେଇଲୁ । ଆମେ ଗାଁ ଛାଡ ଚଣ୍ଡିଗଡକୁ ଚାଲି ଆସିଲୁ । ମୋ ବାପାଙ୍କ ବାହାଘର କେତେଦିନ ପରେ ନାରୁଦା ପ୍ରଥମ ଥର ପାଇଁ ଓଡ଼ଶାକୁ ବୁଲି ଆସିଲେ । ଅନେକ ଦିନ ଧରି ତାଙ୍କର କିଛି ଖବର ନ ମିଳିବାରୁ ସମସ୍ତେ ଭାବିଲେ ନାରୁଦା ଆଉ ଫେରିବେନି ।

କିନ୍ତୁ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ନାରୁଦା ଦିନେ ଚଣ୍ଡିଗଡ ଫେରି ଆସିଲେ, ସାଙ୍ଗରେ ତାଙ୍କର ଶାଢ଼ୀ ପିନ୍ଧା, ପାନ ଖେଉଥିବା ସ୍ତ୍ରୀଙ୍କୁ ନେଇ । ବନ୍ୟାରେ ଓଡ଼ଶାରୁ ଭାସି ଆସିଥିବା ମଞ୍ଜିଟି ପଞ୍ଜାବର ଉର୍ବର ମାଟି ଆଉ ଉତ୍କୃଷ୍ଟ ଜଳବାୟୁ ପାଇ ବେଶ୍ ଭଲ ଭାବରେ ବଢ଼ିବାକୁ ଲାଗିଲା ।

ଗୁଲାବ ସିଂ ଭାବ ବିହ୍ୱଳ ହୋଇ କହି ଚାଲିଥାନ୍ତି.........“ମୋର ମନେ ପଡ଼ଯାଉଛି ଆମ ପିଲାଦିନ କଥା । ସନ୍ଧ୍ୟାବେଳେ ହୃଷୀକୁ ଆଉ ମତେ ବୁଲାଇବାକୁ ନେଲାବେଳେ ନାରୁଦା କହୁଥିବା ପଞ୍ଜାବ କେଶରୀ ରଣଜିତ ସିଂ, ଉତ୍କଳମଣି ଗୋପବନ୍ଧୁ ଆଉ ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କ କାହାଣୀ ଶୁଣାକ, ନରୁଦା ଆମ ଅଞ୍ଚଳର ଗୋଟିଏ ଜୀବନ୍ତ କିମ୍ବଦନ୍ତୀ ହୋଇଯାଇ ଥିଲେ ।

ହୃଷୀ ଆଉ ମୁଁ ଏକାଠି ପଢୁଥାଉ, ଏକା କ୍ଲାସରେ । ବି.ଏ. ପାସ୍ କଲାପରେ, ପଢ଼ା ବନ୍ଦ କରି ବ୍ୟବସାୟ ବୁଝିବାକୁ ସ୍ଥିର କଲି । ହୃଷୀର ଇଚ୍ଛା ଥାଏ ଏମ.ଏ. ପଢ଼ିବାକୁ କିନ୍ତୁ ହଠାତ୍ ଦିନେ ଗାଡ଼ ଆକ୍ସିଡେଣ୍ଟରେ ମୋ ବାପା ମରିଗଲେ । ନାରୁଦା ମଧ୍ୟ ଗାଡ଼ରେ ଥିଲେ । ସେ କ୍ଷତ ବିକ୍ଷତ ହୋଇଥିଲେ । ବାପାଙ୍କ ମୃତ୍ୟୁରେ ଆମ ଘରେ ଶୋକର ଛାୟା ଖେଳିଗଲା । ଆମ ସମସ୍ତଙ୍କ ପାଇଁ ଏଇଟା ଗୋଟିଏ ମସ୍ତବଡ ଧକ୍କା ଥିଲା । ନାରୁଦା କିନ୍ତୁ ଆଉ ସେ ଧକ୍କାରୁ ଉଦ୍ଧାର ପାଇଲେନି । ବାପା ମରିବାର ଅଳ୍ପଦିନ ପରେ ତାଙ୍କର ମଧ୍ୟ ମୃତ୍ୟୁ ହେଲା ।

Digitized by srujanika@gmail.com

ବାପା ମରିବା ପରେ, ଯୁକ୍ଷୀ ତା 'ଏମ. ଏ.' ପଢ଼ା ବନ୍ଦ କରି ମଦେ ବ୍ୟବସାୟରେ ସାହାଯ୍ୟ କରିବାରେ ଲାଗିଲା । ତା ପରିବାର ଆଉ ମୋ ପରିବାର ଭିତରେ କିଛି ତଫାତ୍ ନଥାଏ । ତାର ଗୋଟିଏ ପୁଅ ଚିନୁ ଆଉ ଗୋଟିଏ ଝିଅ ବିନୀ, ଯିଏ ଏବେ ଟ୍ରେନ୍‌ରେ ଆମ ସାଙ୍ଗରେ ଯାଉଛି । ମୋ ପୁଅ ପମି ଚିନୁ ସାଙ୍ଗରେ ।

ଏଇ କେତେଦିନ ହେଲା ଯୁକ୍ଷୀ ଭାରି ବ୍ୟସ୍ତ ହୋଇ ପଡ଼ିଥିଲା । ବ୍ୟସ୍ତ ହୋଇ ପଡ଼ିଥିଲା । ତା ଝିଅ ପାଇଁ ଖୋଜି ଖୋଜି ସେ ବରପାତ୍ରଟିଏ ପାଇଲାନି । କାରଣ ହେଲା ସେ ମାଛ ମାଂସ ଖାଉଥିବା ଓଡ଼ିଆ ପରିବାରର । ଖାଣ୍ଟି ଆର୍ଯ୍ୟ କୁଳର ପଞ୍ଜାବୀମାନଙ୍କ ସାଙ୍ଗରେ ସେମାନେ ବନ୍ଧୁ ହେବେ କେମିତି । ତାଛଡ଼ା ବିନୀକୁ ଓଡ଼ିଆ ଭଲଭାବରେ ଜଣାନାହିଁ । ଶାଢ଼ୀ ସେ ପିନ୍ଧି ଜାଣିନି । ଭାତ ଡାଲି ଅପେକ୍ଷା ରୁଟି ରାଜ୍‌ମା ତାର ପ୍ରିୟ ।

ଚିନୁ ମଧ୍ୟ କିଛି କମ୍ ଅସୁବିଧାରେ ପଡ଼ିନଥିଲା । ସେ ପଞ୍ଜାବ ଇଞ୍ଜିନିୟରିଂ କଲେଜରେ ଆଡ୍‌ମିସନ୍ ନବା ପାଇଁ ସିଲେକ୍ଟ ହୋଇଥିଲା । କିନ୍ତୁ ଆଡ୍‌ମିସନ୍ ଦିନ, ସେଠିକାର କେତେଜଣ ପିଲା ମେଳି ହୋଇ ତାର ସାର୍ଟିଫିକେଟ ସବୁ ଚିରିଦେଲେ । କହିଲେ ତୁ ଓଡ଼ଶାର । ତମେସବୁ ଏଠି ପଢ଼ିଲେ ଆମେ କୁଆଡେ ଯିବୁ ?

ଚିନୁ ଆଉ ବିନୀ ଏଇ ଘଟଣାରେ ମର୍ମାହତ ହୋଇ ପଡ଼ିଲେ ସତ କିନ୍ତୁ ଚୁପ୍ ହୋଇ ସହିଯିବାର ପିଲା ସେମାନେ ନୁହନ୍ତି । ସେମାନେ ଗରିଆଡେ ଏହାର ପ୍ରତିବାଦ କଲେ, ସମ୍ବାଦପତ୍ରକୁ ଚିଠି ଲେଖିଲେ । ତା ଫଳରେ ସେଠିକାର ପିଲାଙ୍କ ରାଗ ବଢ଼ିଲା । ଦିନେ ଚିନୁ ରାତିରେ ସିନେମା ଦେଖି ଘରକୁ ଫେରୁଥିବା ବେଳେ କେତେଜଣ ଯୁବକ ତାକୁ ଛୁରା ଭୁଷି ମାରିଦେଲେ । ଯୁକ୍ଷୀ ଆଉ ତା ପିଲାମାନଙ୍କ ପାଇଁ ଏଇଟା ବୋଧେ ସେମାନଙ୍କର ଶେଷ ନିର୍ଦ୍ଦେଶ ଥିଲା ଚଣ୍ଡିଗଡ଼ ଛାଡ଼ଦେବା ପାଇଁ । ସେମାନେ ତା ପରଦିନହିଁ ଓଡ଼ଶା ବାହାରି ଆସିଲେ ।

ଗୁଲାବ ସିଂ କହିଲେ "ମତେ ବି ସାଙ୍ଗରେ ଆଣିବାକୁ ରାଜି ହେଉ ନଥିଲେ । ସେଇଥି ପାଇଁ ମୋର ରିଜର୍ଭେସନ୍ ହୋଇନି । କିନ୍ତୁ ମୁଁ ଭଲଭାବରେ ଜାଣେ ଏମାନଙ୍କର ଓଡ଼ଶାରେ କିଛି ଜମିବାଡ଼ ନାହିଁ କି ସେମିତି କେହି ଚିହ୍ନା ଜଣା ନାହାନ୍ତି । ତେଣୁ ମୁଁ ବାଧ୍ୟ ହୋଇ ଏମାନଙ୍କ ସାଙ୍ଗରେ ଆସିଛି । ତିନିପୁରୁଷ ଧରି ଯେଉଁ ପରିବାରଟା ଆମ ସାଙ୍ଗରେ ଏତେ ଘନିଷ୍ଠ ହୋଇ ଚଳି ଆସିଥିଲା । ଏମିତି ହଠାତ୍ ଦିନେ ଅଲଗା ହୋଇଯିବ ସେ କଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବିନଥିଲି ।"

Digitized by srujanika@gmail.com

ଏତିକି କହି ଗୁଲାବ ସିଂ ଚୁପ୍ ରହିଲେ । କିଛି ସମୟ ପରେ ସ୍ୱଗତୋକ୍ତି କଲାପରି କହିଲେ" ଯେଉଁ ମାଟି ଆଉ ଜଳବାୟୁରେ ବନ୍ୟାରେ ଭସି ଆସିଥିବା ମଞ୍ଜିଟିଏ ଏତେ ବଡ଼ ଦ୍ରୁମରେ ପରିଣତ ହୋଇ ପାରିଲା ସେଇ ମାଟିରେ ଏମିତି କି ପରିବର୍ତ୍ତନ ହେଲା କେଜାଣି ଚେରଟା ମୂଳରୁ ଉପୁଡ଼ିଗଲା ।"

ତାଙ୍କ ଆଖି ଛଳ ଛଳ ହୋଇ ଆସିଲା । ସେ କହିଲେ "ଏମାନଙ୍କୁ ଏମିତି ଛାଡ଼ ପଳାଠୁ ବଳି ପାପ ଆଉ କଣ ହୋଇପାରେ । କିନ୍ତୁ ମୁଁ ଜାଣି ଜାଣି ତାଙ୍କୁ ଆଉ ରହିବାକୁ ବାଧ୍ୟ କଲିନି । ମୁଁ ଜାଣେ ଚିନୁର ଆତ୍ମାଟା ସେଇ ଚଣ୍ଡିଗଡ଼ର ରାସ୍ତାରେହିଁ ବୁଲୁଥିବ । କାରଣ ଚଣ୍ଡିଗଡ଼ ଛଡ଼ା ଆଉ କୌଣସି ଯାଗା ସେ ଦେଖିନି ।"

ଜିତୁ ପଚାରିଲା "ଲୁଷୀ ବାବୁଙ୍କ ମା କୁଆଡ଼େ ଗଲେ । କାହିଁ ସେତ ଆସି ନାହାନ୍ତି ଆପଣମାନଙ୍କ ସାଙ୍ଗରେ ?"

ଗୁଲାବ ସିଂ କହିଲେ "ସେ ପୁରୁଣା କାଳିଆ ଲୋକ । ଯାହା ବୁଝିଥିବେ ସେଇଆ । ତାଙ୍କ ମନବଳ ବହୁତ । ଚିନୁର ମୃତ୍ୟୁ ଖବର ପାଇ ସେ କାନ୍ଦି କାନ୍ଦି ମୂର୍ଚ୍ଛା ହୋଇଗଲେ । କିନ୍ତୁ ଏମାନେ ସବୁ ଓଡ଼ିଶା ଆସିବା ବେଳେ ସେ ଆସିବାକୁ ରାଜି ହେଲେନି । କହିଲେ "ବୋହୂ ହୋଇ ଆସିବା ଦିନଠୁ ମୁଁ ଘରୁ ବାହାରକୁ ଗୋଡ଼ କାଢ଼ିନି । ଆଉ ବୁଢ଼ୀ ବୟସରେ କାହିଁକି କୁଆଡ଼େ ଯିବି ? ଯାହା ମୁହଁକୁ ରହିଁ ବର୍ଷିବାର କଥା ସେତ ଚଳିଗଲା । ଆଉ ମତେ ମାରିଦେଲେ ମାରିଦେବେ ।" ଓଲଟି ସେ ଏମାନଙ୍କୁ ବୁଝାଉଥାନ୍ତି ଚଣ୍ଡିଗଡ଼ ନ ଛାଡ଼ିବାକୁ ।

ତାଙ୍କ ମତରେ ଯେଉଁ ଜାଗାରେ ଅନାଥ ନାନୁଦାଙ୍କ ପାଇଁ ଏତେ ସ୍ନେହ ମମତା ମିଳିଥିଲା, ସେଠି ଏ ଦଙ୍ଗା ହଙ୍ଗାମ କେତେଦିନ ରହିବ ?

ଏଇ ସମୟରେ ଗାଡ଼ି ହୁଇସିଲ୍ ଦେଲା । ଆମେ ସବୁ କମ୍ପାର୍ଟମେଣ୍ଟ ଆଡ଼କୁ ଦଉଡ଼ିଲୁ ।



Digitized by srujanika@gmail.com

# ସକାଳକୁ ଜଗିଥାଅ

ସରକାରୀ କାମରେ ଦିନଯାକ ବ୍ୟସ୍ତ ରହିବାରୁ ଭରି କ୍ଲାନ୍ତ ବୋଧ କରୁଥିଲି । ସମୟ ପ୍ରାୟ ରାତି ନ'ଟା ହେବ । ମୁଁ କାର ନେଇ ଭୁବନେଶ୍ୱର ଫେରି ଆସୁଥିଲି । ନିଛାଟିଆ ରାସ୍ତା । ମନ୍ଦ ମନ୍ଦ ହୋଇ ବୋହି ଆସୁଥିବା ପବନରେ ଆଖି ମାଡ଼ ମାଡ଼ ପଡୁଥାଏ । ହଠାତ୍ ଇଞ୍ଜିନିଟା ବନ୍ଦ ହୋଇଗଲା । ମୁଁ କାରର ବନେଟ୍ ଖୋଲି ଦେଖା ଦେଖି କଲି । କିଛି ଜଣା ପଡ଼ିଲାନି । ଦୁର୍ଭାଗ୍ୟକୁ ଟର୍ଚ୍ଚଟିଏ ମଧ୍ୟ ପାଖରେ ନଥାଏ । ଏପଟ ସେପଟ ବୁଲାବୁଲି କଲି । କୌଣସି ଲୋକବାକ ଦେଖା ଗଲେନି । ରାତିଟା ଗାଡ଼ିରେ କଟାଇଦେବା ପାଇଁ ସ୍ଥିର କଲି । ଏଣେ ଭୋକବି ଲାଗୁଥାଏ । ଏଇ ସମୟରେ ଗାଢ଼ ଆଲୁଅରେ ଦେଖିଲି ସାମନା ଆଡୁ ଜଣେ ବୃଦ୍ଧ ଆସୁଛନ୍ତି, ତମ୍ବା ବର୍ଣ୍ଣର ଗରିହାତିଆ ମଣିଷ । ଧୋତି, ପଞ୍ଜାବୀ ପିନ୍ଧି ଥାଆନ୍ତି । ଦୂରରୁ ମଧ୍ୟ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ବାରିହୋଇ ପଡୁଥାଏ । ପାଖକୁ ଆସିବାରୁ ମୁଁ ତାଙ୍କୁ ହାତଠାରି ଡାକିଲି ।

ସେ ଆସିଲେ । ମୁଁ ତାଙ୍କୁ ମୋ ଅସୁବିଧା କଥା କହିଲି । ସେ ମତେ ବ୍ୟସ୍ତ ନହେବା ପାଇଁ କହି ନିଜ ପରିଚୟ ଦେଇ କହିଲେ ଯେ ତାଙ୍କ ନା' ହେଲା ନନ୍ଦକିଶୋର ମହାପାତ୍ର । ପାଖ ଗାଁ ସ୍କୁଲରେ ଶିକ୍ଷକ ଅଛନ୍ତି । ଅନ୍ୟ ଏକ ଗାଁରେ ଥିବା ବନ୍ଧୁ ଘରକୁ ଯାଇଥିଲେ । ଏବେ ଫେରୁଛନ୍ତି । ମତେ ସେ ତାଙ୍କ ସାଙ୍ଗରେ ଯିବାକୁ ବାଧ୍ୟ କଲେ । ମୁଁ ଅଗତ୍ୟା କାର ଲକ୍ କରି ତାଙ୍କ ସାଙ୍ଗରେ ଗଲି ।

ଟିକିଏ ଆଗକୁ ଯାଇ ରାସ୍ତାର ଡାହାଣ ପାଖରେ ଥିବା ଗୋଟିଏ ଛୋଟ ରାସ୍ତାର କିଛିଦୂର ଯିବାପରେ ମିଞ୍ଜି ନୁଞ୍ଜି ଆଲୁଅ ଜଳୁଥିବାର ଦେଖାଗଲା । ବୃଦ୍ଧ କହିଲେ "ଏଇଟି ଆମର ଗାଁ ।" ଗାଁର ଆରମ୍ଭରେ ହିଁ ଗୋଟିଏ ଲମ୍ବାଳିଆ ଟାଇଲ ଘର । ସେଇଟା ହେଲା ସ୍କୁଲ ଘର । ଟାଇଲି ଘରକୁ ଲାଗି ଗୋଟିଏ ରୁଜ ଘର । ସେଇ ଘରର ଦ୍ୱାର ପାଖରେ ଠିଆ ହୋଇ ବୃଦ୍ଧ କହିଲେ, 'ଏଇଟା ମୋ ଘର ।

ଘର ବାହାରୁ ତାଲା ପଡ଼ିଥିଲା । ବୃଦ୍ଧ ଜଣକ ତାଲା ଫିଟାଇ ଘର ଭିତରକୁ ପଶିଲେ । ମୁଁ ମଧ୍ୟ ତାଙ୍କ ପଛେ ପଛେ ଗଲି । ମୁଁ ପଚାରିଲି ଏ ଘରେ କ'ଣ ଆଉ

Digitized by srujanika@gmail.com

କେହି ରହନ୍ତିନି । ବୁଢ଼ା ଲୋକ କହିଲେ ତାଙ୍କର ଗୋଟିଏ ପୁଅ । ତାର ଜନ୍ମ ପରେ ପରେ ତା ମା’ ଆଖି ବୁଜିଦେଲା । ସେ ପୁଅ ବର୍ତ୍ତମାନ ବୁର୍ଲାରେ ଇଞ୍ଜିନିୟରିଂ ପଢ଼ୁଛି ।

ତାଙ୍କ ବନ୍ଧୁ ଘରୁ ଆଣିଥିବା ପିଠାରୁ ବୁଢ଼ା ଲୋକ କିଛି ମତେ ଦେଲେ ଆଉ କିଛି ନିଜେ ଖାଇଲେ । ଶୋଇବା ପୂର୍ବରୁ ବସି ଏଣୁ ତେଣୁ ଗପସପ କରୁ କରୁ କହିଲେ “ପୁଅଟି ବୁର୍ଲାରେ ପଢ଼ିଲା ଦିନରୁ ଘରଟା ଖାଲି ଖାଲି ଲାଗୁଛି ।”

ମୁଁ କହିଲି “ତାହେଲେ ପୁଅକୁ ଛାଡ଼ୁଥିଲେ କାହିଁକି ? ଏଠି ଆର୍ଟସ ପଢ଼ାଇଲେନି ।” ସେ କହିଲେ “ପୁଅ ବି ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ୍ କଲାପରେ ଆର୍ଟସ୍ ପଢ଼ିବାକୁ ଚାହୁଁଥିଲା । ମୁଁ କିନ୍ତୁ ତାକୁ ବାଧ୍ୟ କରି ସାଇନ ସ ପଢ଼ାଇଲି । ମୁଁ ଚାହୁଁଥିଲି ସେ ଇଞ୍ଜିନିୟରିଂ ପଢ଼ୁ । କିଛି ଗଠନମୂଳକ କାମ କରୁ । ଭିଟାମାଟିରେ ବଢ଼ିଥିବା ପିଲା ହାକିମ ହେଲେ “ଗରୀବ ଗୁରୁବାଙ୍କ ଦୁଃଖ ଭଲ ଭାବରେ ବୁଝି ପାରିବେ ।”

ଏମିତି ଗପସପ ପରେ ମତେ ନିଦ ହୋଇଗଲା । ମୁଁ ଉଠିଲାବେଳକୁ ସକାଳ ହୋଇଯାଇଥିଲା । ବୁଢ଼ା ଲୋକ ଘର ଭିତରେ ନଥିଲେ । ମୁଁ ବାହାରକୁ ବାହାରି ତାଙ୍କୁ ଖୋଜୁଥିବା ବେଳେ ଦୁଇ ତିନିଜଣ ଚଷୀ ଲଙ୍ଗଳ ଧରି ବିଲକୁ ଯାଉଥିଲେ । ମତେ ଦେଖି ପାଖକୁ ଆସିଲେ । ମୋ କଥା ଶୁଣି ସେମାନେ ପଚାରିଲେ “ନନ୍ଦ ମାଷ୍ଟ୍ରେ ଆସିଲେଣି ? କାହିଁ ଆମେତ ଜାଣିନୁ । ସେ କ’ଣ ବୁର୍ଲା ଯାଇଥିଲେ ।”

ମୁଁ କହିଲି “ନା, ନା । ସେ କାଲି ତାଙ୍କ ବନ୍ଧୁ ଘରୁ ଫେରୁଥିବାବେଳେ ମତେ ସାଙ୍ଗରେ ନେଇ ଆସିଲେ । ତାଙ୍କୁ ଦେଖାକରି ଦେଇ ମୁଁ ଗାଡ଼ି ପାଖକୁ ଯିବି ।”

ସେମାନେ କହିଲେ ତାହେଲେ ନନ୍ଦମାଷ୍ଟ୍ରେ ଅଲେଖ ବାବୁଙ୍କ ଘରକୁ ଯାଇଥିବେ । ଆପଣ ଏଠି ଥାଆନ୍ତୁ ଆମେ ତାଙ୍କୁ ପଠେଇ ଦଉଛୁ ।

କିଛି ସମୟ ପରେ ଜଣେ ଧୋତି କୁର୍ତ୍ତା ପିନ୍ଧା ବୁଢ଼ା ଆସି ପହଞ୍ଚିଲେ । କହିଲେ “ମୋ ନା ଅଲେଖ । ଶୁଣିଲି ନନ୍ଦ ଆସିଛି । କାହିଁ ମୁଁ ତ ଜାଣିନି । ତା ପୁଅ ମରିବାର ଖବର ପାଇ ସେ ବୁର୍ଲା ଯାଇଥିଲା । ଫେରିଲେ ମତେ ତ ଦେଖା କରିବା କଥା ।”

ମୁଁ ପୁରାପୁରି ଆଶ୍ଚର୍ଯ୍ୟ ହୋଇଗଲି । କହିଲି “ତାଙ୍କ ପୁଅ ମରି ଯାଇଛି ? କାହିଁ ମୋତେ ସେମିତି କିଛି କାଲି ରାତିରେ କହି ନାହାନ୍ତି । ସେ କହୁଥିଲେ ତାଙ୍କ ପୁଅ ବୁର୍ଲାରେ ଇଞ୍ଜିନିୟରିଂ ପଢ଼ୁଛି ବୋଲି ।”

Digitized by srujanika@gmail.com

ଅଲେଖ ବାବୁ କହିଲେ "ନନ୍ଦର ମୁଣ୍ଡ ଓ ଆଉ ଠାପ ହୋଇଯାଇ ନି ।" ବୁର୍ଲାରେ ଘଟିଯାଇଥିବା ଗଣ୍ଡଗୋଳରେ ଯେଉଁ ଏଂଟାର ଜଣ ପିଲାଙ୍କ ଶବ ପାଓ୍ୱାର ଋନେଲ ଭିତରୁ ଉଦ୍ଧାର କରଯାଇଥିଲା, ସେଥିରେ ତା ପୁଅ ଜିତୁର ଶବ ଥିଲା । ଟେଲିଗ୍ରାମଟା ପଢ଼ିଲା ପରେ ସେ ମୋ ଆଡକୁ ଯେଉଁଟାକୁ ବଢ଼ାଇ ଦେଇ କଲି କଲି ହୋଇ କାନ୍ଦ ଉଠିଥିଲା । ବିଚରା ପୁଅକୁ ଜବରଦସ୍ତ ଇଞ୍ଜିନିୟରିଂ ପଢ଼ାଇ ଥିଲା, ପୁଅ ଦେଶ ଗଠନରେ ସାହାଯ୍ୟ କରିବ ବୋଲି । ନନ୍ଦ କହୁଥିଲା ତା ପୁଅ ଯେଉଁଦିନ ହୀରାକୁଦ କି ପାରଦ୍ୱୀପ ପରି ଆଉ ଗୋଟିଏ ନୂଆ ଜାଗା ଉପରେ ଠିଆ ହୋଇପଡ଼ି କହିବ ଏହା ଏଇଟା ମୁଁ ତିଆରି କରିଛି, ଏହାର ପ୍ଲାନ ମୁଁ କରିଥିଲି । ସେଇଦିନ ଜୀବନର ସବୁ ଅଭିଳାଷ ପୁରିଯିବ । ତାପରେ ମୁଁ ଶାନ୍ତରେ ମରି ପାରିବି ।

ବିଚରାର ସେଇ ପୁଅଟି ଛଡ଼ା ସଂସାରରେ ଆଉ କେହି ନଥିଲେ । ଯୌବନରେ ସ୍ତ୍ରୀକୁ ହରାଇ କେବଳ ଏଇ ପୁଅ ମୁହଁକୁ ଋହିଁ ସେ ଏମିତି ସଂଯମ ଆଉ ଆଦର୍ଶ ରକ୍ଷାକରି ପାରିଥିଲା । ଗତ ତିରିଶ, ଋଳିଶି ବର୍ଷ ଧରି ଏହି ଅଞ୍ଚଳର ଯେତେଲୋକ ମଣିଷ ହୋଇ ବାହାରିଛନ୍ତି ସମସ୍ତେ ନନ୍ଦ ଗୁରୁଙ୍କ ପାଖରେ କୃତଜ୍ଞ । ନନ୍ଦସାର୍‌ଙ୍କ ଛାଟ ହିଁ କିଶୋର ବୟସର ସବୁ ବାଙ୍କ ପାଖରେ ଜଗିରହି ତାଙ୍କୁ ସିଧାବାଟରେ ନେଇଛି ।

ଏଇ ସମୟ ଭିତରେ ଆମ ପାଖରେ ଟାଉନର ଅନ୍ୟ ଲୋକ ମଧ୍ୟ ଜମାହୋଇ ଯାଇଥିଲେ । ୟାଠୁ ତାଠୁ ହୋଇ ସମସ୍ତେ ଖବର ପାଇଥିଲେ ଯେ ନନ୍ଦ ମାଷ୍ଟ୍ରେ ଆସୁଛନ୍ତି । କିନ୍ତୁ ମୋଟୁଡ଼ା ନନ୍ଦ ମାଷ୍ଟ୍ରଙ୍କୁ ଆଉ କେହି ଦେଖି ନାହାନ୍ତି । ଟୋକା ଟାକେଳିଆମାନେ ଏପଟ ସେପଟ ଖୋଜା ଖୋଜି ବି ଆରମ୍ଭ କରିଦେଇ ଥାଆନ୍ତି ।

ମୁଁ ଅନୁମାନ କରି ପାରୁଥିଲି ଯେ ନନ୍ଦ ମାଷ୍ଟ୍ରଙ୍କ ପ୍ରତି ଟାଉନ ଯାକ ସମସ୍ତଙ୍କର ସହାନୁଭୂତି ଅଛି । ସମସ୍ତେ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଆଉ କର୍ତ୍ତବ୍ୟ-ନିଷ୍ଠାକୁ ଖାତିର କରନ୍ତି ।

ତାଙ୍କ ପୁଅ ଜିତୁ ମୃତ୍ୟୁରେ ଟାଉନ ସାରା ମର୍ମାହତ । ସତେ ଯେମିତି ଟାଉନର କୋଡ଼ମାଟି ସେଇ ପିଲାଟିକୁ ଝୁରୁଛି । ଲୋକମାନଙ୍କ କଥାବାର୍ତ୍ତାରୁ ମୁଁ ଜାଣି ପାରୁଥିଲି ଯେ ସେ କେବଳ ଜଣେ ମେଧାବୀ ଛାତ୍ର ଥିଲା, ତା ନୁହେଁ ଅନ୍ୟର ବିପତ୍ତିରେ ଆଗଭର ହୋଇ ଅଣ୍ଟାଭିଡ଼ି ବାହାରି ପଡୁଥିଲା । ଆଜିକାଲିର ପିଲାଙ୍କ ପରି ପାନ, ସିଗାରେଟ ଇତ୍ୟାଦି କୌଣସି ନିଶା ଅଭ୍ୟାସ ନଥିଲା । ଝଗଡ଼ାତ ଦୂରର କଥା, ବଡପାଟିରେ ସେ କାହା ସାଙ୍ଗରେ କଳି କରିବାର ମଧ୍ୟ କେହି ଶୁଣି ନଥିଲେ । ଜିତୁ ଗତି ତିନିଟାରେ ବୁର୍ଲା ଇଞ୍ଜିନିୟରିଂ ହଷ୍ଟେଲରୁ ପଢ଼ର

Digitized by srujanika@gmail.com

କିଲୋମିଟର ଦୂରପାଇଁ କାହା ସଙ୍ଗରେ ଝଗଡ଼ା କରିଥିବ- ଏକଥା କେହି ହେଲେ ବିଶ୍ୱାସ କରିପାରୁ ନଥିଲେ ।

ଗାଁ ଲୋକମାନଙ୍କ କଥା ଶୁଣି ନନ୍ଦବାବୁ ଆଉ ତାଙ୍କ ପୁଅ ପ୍ରତି ସହାନୁଭୂତିରେ ମୋ ଆଖିରେ ମଧ୍ୟ ଲୁହ ଢଳେଇ ଆସୁଥିଲା ।

ଡେରି ହେଉଥାଇ ଥିବାରୁ ମୁଁ ଗାଡ଼କୁ ଆସିବାକୁ ଚାହୁଁଥିଲି, କିନ୍ତୁ ନନ୍ଦବାବୁଙ୍କୁ ଥରେ ଦେଖା କରି ନ ଯିବାଟା ଅନୁଚିତ ହେବ ଭାବି ବ୍ୟସ୍ତ ହେଉଥିଲି ।

ଏଇ ସମୟରେ ଗାଁ ଭିତରୁ ଗୋଟିଏ କାର୍ ଆସିଲା । କାର୍ ଭିତରୁ ଜଣେ ଯୁବକ ଓହ୍ଲେଇଲେ । ସେ ଭାରି ବିମର୍ଷ ଜଣାପଡୁଥାନ୍ତି । ସେ ଏଇ ପାଖ ପାଖ ଗାଁର ଲୋକ, ଭୁବନେଶ୍ୱରରେ ଡାକ୍ତର ଅଛନ୍ତି ।

ସେ କହିଲେ "ବୁର୍ଲାରେ ଜିତୁର ଶେଷକୃତ୍ୟ ସାରି ନନ୍ଦସାର୍ ଭୁବନେଶ୍ୱର ବସ୍‌ଷ୍ଟାଣ୍ଡରେ ଓହ୍ଲାଇ ଗାଁକୁ ଆସିବେ ବୋଲି ବସ୍ ଖୋଜୁଥାଆନ୍ତି । ସେଦିନ ବୁର୍ଲା ଘଟଣାର ପ୍ରତିବାଦରେ ଭୁବନେଶ୍ୱରରେ ବିକ୍ଷୋଭ ପ୍ରଦର୍ଶନ ହେଉଥାଏ । ତେଣୁ ବସ୍‌ଷ୍ଟାଣ୍ଡରେ ବହୁତ ପୋଲିସ୍ ବୁଲୁ ଥାଆନ୍ତି । ଏଇ ସମୟରେ କେତେକ ବିକ୍ଷୋଭକାରୀ ପୋଲିସମାନଙ୍କ ଉପରକୁ ଟେକା ପଥର ଫୋପାଡ଼ିଲେ । ପୋଲିସମାନେ ଲାଠି ଚାର୍ଜ ଆରମ୍ଭ କରିଦେଲେ । ବିକ୍ଷୋଭକାରୀମାନେ ଦୌଡ଼ା ଦୌଡ଼ି କରି ଯେ ଯୁଆଡେ ପଳେଇଲେ । କିନ୍ତୁ ନନ୍ଦସାର୍ ପୋଲିସ୍ ଘେରରେ ପଡ଼ିଗଲେ । ପୋଲିସ୍‌ଙ୍କ ଲାଠି ମାଡରେ ତାଙ୍କ ମୁଣ୍ଡ ଫାଟି ଯାଇଥାଏ ଓ ଶରୀରର ଅନ୍ୟାନ୍ୟ ଜାଗାରେ ମଧ୍ୟ ଜୋର୍‌ରେ ଆଘାତ ଲାଗିଥାଏ । ଲାଠି ଚାର୍ଜ ବନ୍ଦ ହେବା ପରେ କେତେଜଣ ଦୋକାନୀ ତାଙ୍କୁ ଉଠାଇ ଡାକ୍ତରଖାନା ଆଣିଲେ । ତାଙ୍କର ଚେତା ନଥାଏ । ଡାକ୍ତରଖାନାରେ ମୁଁ ତାଙ୍କୁ ଚିହ୍ନି ପାରିଲି । ବହୁତ ଚେଷ୍ଟା କଲି କିନ୍ତୁ କିଛି କରିପାରିଲିନି । କାଲି ରାତି ସାଢ଼େ ନ' ଟାରେ ସାର୍ ଚାଲିଗଲେ ।

କାଲି ବିକ୍ଷୋଭ ଯୋଗୁ ଗାଡ଼ି ମଟର କିଛି ମିଳିଲାନି । ଆଜି ସକାଳୁ ସକାଳୁ ଗାଡ଼ି ଯୋଗାଡ଼ କରି ଶବଟା ଆଣିଛି ।

ସମସ୍ତେ ସେମିତି ଠିଆହୋଇ ଥାଆନ୍ତି । କାହା ପାଟିରୁ କିଛି କଥା ବାହାରୁ ନଥାଏ । ମୁଁ ରୁମାଲରେ ଲୁହ ପୋଛି ପୋଛି ଗାଡ଼ି ପାଖକୁ ଆସିଲି । ଷ୍ଟାର୍ଟ କରିବାରୁ ଗାଡ଼ିଟା ସାଙ୍ଗେ ସାଙ୍ଗେ ଷ୍ଟାର୍ଟ ହୋଇଗଲା ।

Digitized by srujanika@gmail.com

# କଥାର କୋଣାର୍କ
# ବ୍ୟଥାର ଧର୍ମପଦ

କଥା କହିବାଟା ଏତେ ସହଜ ନୁହେଁ । ଏମିତି କଥାଟିଏ ତ ଯିଏ ପାରିବ ସିଏ କହିଦେବ । କିନ୍ତୁ କଥାକୁ ବନେଇ ଚୁନେଇ ନଥା ଉପକଥା ଯୋଡ଼ ଓରଫଣ୍ଡି ଠିକ୍ ବେଳରେ ଠିକ୍ ଲୋକଙ୍କ ଆଗରେ କହି ପାରିଲେହିଁ କଥାର ମର୍ଯ୍ୟାଦା ରହେ । ଆମ ଓଡ଼ିଶାରେ କ'ଣ ଲେଖକ ନାହାନ୍ତି ? ନା ସେମାନଙ୍କୁ ଲେଖା ଜଣା ନାହିଁ । ଓଡ଼ିଶାରେ 'ଦେଶ୍' କି 'ଧର୍ମଯୁଗ' ପତ୍ରିକା କି ଗଳ୍ପ ବା ଶଙ୍କରଙ୍କର ନଭେଲର ବିକ୍ରି କେତେ ହେଉଛି ଦେଖନ୍ତୁ । ତା ସାଙ୍ଗରେ ଓଡ଼ିଆ ପତ୍ର ପତ୍ରିକା ଆଉ ଉପନ୍ୟାସର ବିକ୍ରି ଦେଖନ୍ତୁ ତାହେଲେ ଜାଣିବେ ଓଡ଼ିଶାରେ ପାଠକର ଅଭାବ ନାହିଁ । କିନ୍ତୁ କଥା ହେଲା ବନେଇ ଚୁନେଇ ଠିକ୍ ସମୟରେ ଠିକ୍ ଲୋକ ଆଗରେ କହିବାଟା ହେଲା କହିବା ଲୋକର ବାହାଦୁରୀ । ଏମିତି ଲୋକ ବି ଓଡ଼ିଶାରେ ବହୁତ ଅଛନ୍ତି । ସବୁ ଗାଁରେ ଜଣେ ଜଣେ ଥିବେ । ସହରମାନଙ୍କରେ ତ ଶ୍ରେଣୀ ଥିବେ । ହେଲେ ସେମାନେ ଖାଲି କହୁଛନ୍ତି, ଲେଖୁ ନାହାନ୍ତି । ଲେଖୁଥିଲେ ଲେଖୁଥିବେ ହେଲେ ଛପାଉ ନାହାନ୍ତି । ଛପାଉ ଥିବେ ଅବା ହେଲେ ଆମେ କେବେ ପଢ଼ିନାହୁଁ । ମୁଁ ଜାଣିବାରେ ଆମ ଗାଁରେ ଏମିତି ଲୋକ ଜଣେ ଅଛନ୍ତି ଯେ କି ବେଶ୍ କହି ପାରନ୍ତି । ଖାଣ୍ଟି ମିଛ କଥା ଗୁଡ଼ାକ ଏମିତି ବନେଇ ଚୁନେଇ କହନ୍ତି ଯେ ଆମେ ସବୁ ପଇଯାଉ ।

ଗାଁ ମୁଁ ଅନେକ ଦିନ ହେଲା ଛାଡ଼ିଲିଣି । କଣ୍ଢେଇ କୋଳିର ସ୍ୱାଦ, ଘଣ୍ଟ ମାଦଳର ତାଳ, ଯାନି ଯାତ୍ରା ସବୁ ମୋ ମନରେ ଝାପସା ହୋଇଗଲାଣି । ହେଲେ ଗାଁର ଏମିତି ଗୋଟିଏ ଲୋକର ସ୍ମୃତି ମୋ ମନ ଭିତରେ ରହିଯାଇଛି, ଯାହା କଥା ମନେ ପଡ଼ିଲା ମାତ୍ରେ ମୁଁ ଛୁଟି ଖୋଜେ ଗାଁକୁ ଯିବା ପାଇଁ । ସେହି ଲୋକଟି ହେଲେ ଚୀତିରଞ୍ଜନ ମିଶ୍ର ଓରଫ ଜାବୁ ଭଇନା । ଆମ ଉପରେକ୍ତ କୁହାଳିଆ ବ୍ୟକ୍ତି ।

ସ୍କୁଲ କ୍ୟାରିୟରରେ ଭଲ ଛାତ୍ର ଥିଲେ । ଫାଷ୍ଟ ଡିଭିଜନରେ ମାଟ୍ରିକ ପାଶ୍ କଲାପରେ ରେଭେନ୍ସାରେ ସାଇନ୍ସ ପଢ଼ିଲେ । ସେଠି ସେ ହଷ୍ଟେଲରେ ରହିଲେ । ସଙ୍ଗ ଦୋଷରୁ ହେଉ ବା ଅନ୍ୟ କେଉଁ କାରଣରୁ ହଉ ତାଙ୍କ ଦେଖ

Digitized by srujanika@gmail.com

ଆଉ ପାଠ ହେଲା ନାହିଁ । ଦି' ତିନି ଥରରେ ଆଇ.ଏସ.ସି. ପାଶ୍ କରି ଭୁବନେଶ୍ୱର ଏରୋଡ୍ରମରେ କ'ଣ ଗୋଟାଏ ଗ୍ରାଉଣ୍ଡ ଇଞ୍ଜିନିୟରିଂ ପଢ଼ିଲେ । ତାକୁ ମଧ୍ୟ ସାରି ନପାରି ଗାଁ ଫେରିଲେ । ସେଦିନଠୁ ସେ ଗାଁରେ ଥାଆନ୍ତି । ବୟସରେ ସେ ଆମଠାରୁ ଯଥେଷ୍ଟ ବଡ । ସେ ଗାଁକୁ ଫେରିଲା ବେଳକୁ ଆମେ ପଞ୍ଚମ କି ଷଷ୍ଠ ଶ୍ରେଣୀର ଛାତ୍ର ।

ଆମ ଗାଁ ମଝିରେ ଗୋଟିଏ ସିମେଣ୍ଟର ପିଣ୍ଡି ଅଛି । ତାକୁ ଲାଗି ଛୋଟିଆ ଘରଟିଏ । ଡ୍ରାମା ଫ୍ରାମା ହେଲେ ପିଣ୍ଡିଟା ଷ୍ଟେଜ ହୁଏ ଆଉ ଘରଟା ହୁଏ ଗ୍ରୀନ୍ ରୁମ୍ । ଅନ୍ୟ ଦିନ ମାନଙ୍କରେ ସେଠି ସନ୍ଧ୍ୟା ବେଳିଆ ଗୁଲିଗପ ଜମେ । ଦିନ ସାକର ଅଙ୍ଗେ ନିଭାଇ ଥିବା ଘଟଣାକୁ ସମସ୍ତେ ବନେଇ ଚୁନେଇ କହନ୍ତି । ଭଙ୍ଗ ବଟା ଚାଲିଥାଏ । ରାତି ବେଶୀ ହେଲେ ଭିଡ ଭାଙ୍ଗେ । ଟୋକାଟାକେଳିଆ ପଢ଼ିବାକୁ ଯାଆନ୍ତି । ଚାକିରୀଆ ଯେତକ ତରତର ହୁଅନ୍ତି ଖାଇପିଇ ଶୋଇଲେ ସକାଳ ଗାଡ଼ି ଧରିବେ । ଅଫିସ ଯିବେ । ଠିକ୍ ଏତିକିବେଳେ ଜାବୁ ଭାଇନା କୁଆଡ଼ୁ କଥାଯୋଡ଼ ଆରମ୍ଭ କରିଦେବେ ଗୋଟାଏ ଗପ । ଭଙ୍ଗ ନିଶାରେ ଆଖି ଦି'ଟା କୁମ୍ଭାଟୁଆ ଆଖି ପରି ଲାଲ ହୋଇଥିବ । କଣ୍ଠ ବସେଇ ଜମେଇ ଜମେଇ ଏମିତି ବର୍ଣ୍ଣନା କରି କହିବେ ଯେ ତର ତର ହୋଇ ଘରକୁ ବାହାରିବା ଲୋକ ସବୁ ପୁଣି ଫେରି ଆସିବେ । ଘେରି ଯିବେ ତାଙ୍କୁ । ଗପ ଏମିତି ଚାଲିବ ଅଧଘଣ୍ଟେ କି ପଇଁଚାଳିଶ ମିନିଟ୍ । ଗପ ସରିବା ପର୍ଯ୍ୟନ୍ତ ସମସ୍ତେ ଚାହିଁଥିବେ ତାଙ୍କ ମୁହଁକୁ ।

ସେ ଅନେକ କଥା ଗପନ୍ତି । ଆମ ଗାଁର ଗୌରବମୟ ଇତିହାସ, ତାଙ୍କର ଅଭିଜ୍ଞତା, କ୍ରିକେଟ ଖେଳ ଏମିତି କେତେ କ'ଣ । ମୋର ଗୋଟିଏ ଧାରଣା ସେ ଯେ କୌଣସି ବିଷୟରେ ଘଣ୍ଟା ଘଣ୍ଟା ଚପି ପାରିବେ । ଆମ ଗାଁର ବୁଢ଼ା କାଶୀବିହାରରେ ପଢ଼େ । ସେ କୁସ୍ତି ଦେଖି ଆସିଥିଲା, ଇଉନିଭରସିଟିରେ । ସେଇ ବିଷୟ କହୁ କହୁ ତାଠୁ କଥା ଛଡେଇ ଜାବୁ ଭାଇନା କହିଲେ 'ଆରେ ସିଏ କି କୁସ୍ତି । ଜଣକର ବେକ ଷଣ୍ଢା ଭଙ୍ଗିବ ନହେଲେ ଜଣଙ୍କର ହାତ ଖୁଆ ଖସିବ, ତାହେଲେ ଜାଣିବ କୁସ୍ତି । ଥିଲେ ଜଣେ ଆମ ଗାଁରେ ନିଧି ମିଶ୍ରେ, କୁସ୍ତି କରୁଥିଲେ । ପାଞ୍ଚ ଫୁଟ ତିନି ଇଞ୍ଚର ଲୋକ । ହେଲେ କେତେ କେତେ ପହିଲମାନଙ୍କ ମୁହଁରେ ଚୂନ କାଳି ବୋଳି ଦେଇଥିଲେ । ଥରେ ପୁରୀକୁ ଗୋଟିଏ ବିହାରୀ ମଲ୍ଲ ଆସିଥିଲା । କେତେ ଯାଗା ବୁଲି ସବୁ ଯାଗାରେ ମଲ୍ଲ ମାନଙ୍କୁ ଜିତି ଶେଷରେ ପୁରୀ ଆସିଥିଲା ।

ଗଜପତିଙ୍କ ଖାସ୍ ପହିଲିମାନ ସାଙ୍ଗରେ ଲଢ଼ିବା ପାଇଁ । ତା ଆଗରୁ କେତେ ରଜା ତା ମୁଣ୍ଡରେ ପାଟକନା ଗୁଡ଼ାଇ ତାକୁ ଛାଡ଼ଛନ୍ତି । ଲଢ଼େଇ ହେଲା, ହେଲେ ଗଜପତିଙ୍କ ପହିଲ୍ମାନକୁ ଗୋଟାଏ ମିନିଟିରେ ସେ ଚିତ୍ କରିଦେଲା । ଗଜପତିଙ୍କ

Digitized by srujanika@gmail.com

ମୁହଁ ଦେଖୁ ହୋଇଚାଲ । ଗଜପତି ଜଗନ୍ନାଥଙ୍କ ଚଳନ୍ତ ପ୍ରତିମା, ତାଙ୍କୁ ଅପମାନ ମାନେ ଜଗନ୍ନାଥଙ୍କୁ ଅପମାନ । ସେ ଯାଇ ବଡ ଦେଉଳରେ ଅଧିଆ ପଡ଼ିଲେ । ଜଗନ୍ନାଥେ ସ୍ୱପ୍ନେଇଲେ ସୁନ୍ଦରପୁରର ନିଧି ମିଶ୍ରଙ୍କୁ ଡାକ । ନିଧି ମିଶ୍ରେ ଗଲେ । ତାଙ୍କ ପାଖପଟୁ ଚିନି ଇଞ୍ଚିଆ ଚେହେରା ଦେଖି ବିଲାତି ମଲ୍ଲ ହସିଲା, ରହସ୍ୟ କଲା, କିନ୍ତୁ କୁସ୍ତି ଆରମ୍ଭର ମିନିଟକେ ମଧ୍ୟରେ ନିଧି ମିଶ୍ରଙ୍କ ମୁଡା ତଳେ ପଶି ମୁଣି ବିକଳରେ ପ୍ରାଣଭିକ୍ଷା କଲା । ଆମେ ସବୁ ଏକଥା ଶୁଣୁ । ଗପ ସରିଲେ ଘରକୁ ଯାଉ । କେହି କେବେ ମୁହଁ ଖୋଲି ପଚାରନ୍ତିନି ଯେ ତମେ ଏକଥା କେମିତି ଜାଣିଲ । ତମକୁ କିଏ କହିଥିଲା ବା କେଉଁ ତାଳପତ୍ର ଖେଦାରୁ ପଢ଼ିଥିଲ । ପଚାରିଲେ ବାବୁ ଭାଇନା ଖପା ହେବେ । ହାଉକିନା ଖେଙ୍କି ଉଠିବେ । କି ଲୋଡା ଆମେ ଗପ ଶୁଣିଲେ ଯାଏ । ସତ ମିଛରୁ ଆମର କି ଥାଏ ।

ଟାଁ ଭଗବତୀଙ୍କ ମହିମା ବର୍ଣ୍ଣନା କରିବାକୁ ଗଲାବେଳେ ବାବୁ ଭାଇନା ଘୋର ବିହ୍ୱଳ ହୋଇପଡନ୍ତି । କୁହନ୍ତି ସେ ଯୁଗ କାହିଁ ? ସେତେବେଳେ ଲୋକେ ମିଛକଥା ପାଟିରୁ ବାହାରିଲେ ଜିଭ କାମୁଡ ଦେଉଥିଲେ । ଡାକିଲେ ଭଗବତୀ 'ଓ' କରୁଥିଲେ । ସେଠୁ କଥା ବଖାଣ୍ତି କେମିତି ଥରେ ହରିଜନମାନେ ବ୍ରାହ୍ମଣଙ୍କ ବିରୁଦ୍ଧରେ ମକଦ୍ଦମା କରିଥିଲେ । ବ୍ରାହ୍ମଣମାନେ ଭଗବତୀଙ୍କ ପାଖରେ ଅଧିଆ ପଡଲେ । ଭଗବତୀ ସ୍ୱପ୍ନେଇଲେ "ତମେ ଯାଅ ମୁଁ ତମ ସାଙ୍ଗରେ ଯିବି" । ତାରିଖ ଦିନ ବ୍ରାହ୍ମଣମାନେ ସଜବାଜ ହୋଇ ଯାଉ ଯାଉ ବାଟରେ ବୁଢୀ ଧୋବଣୀ ଖବର ଦେଲା ସଧବା ମାଇପିଟିଏ ଆଗରେ ଯାଉଛି । ଖବର ଦେଇ ଯାଉଛି ସୁନ୍ଦର ପୁରର ବ୍ରାହ୍ମଣମାନଙ୍କୁ କହିବ ଝଅଟ ଆସିବେ କଚେରୀବେଳ ହୋଇ ଗଲାଣି । ଏମାନେ କଚେରୀ ହତା ଭିତରେ ମଶ୍ଳ ପଶୁ ଜଣା ସଜନା ଗଛତଳେ ମଦ ମଦ ହୋଇ ଭଙ୍ଗି ଗଲା । ବ୍ରିଟିଶ ଅମଳ । ଗୋରା ଜଜ୍ କଲମ କାମୁଡ ଅଧଘଣ୍ଟେ କାନ କ'ଣ ଭାବିଲା କେଜାଣି ମକଦ୍ଦମାର ରାୟ ଦେଲା ବ୍ରାହ୍ମଣମାନଙ୍କ ସପକ୍ଷରେ ।

କ୍ରିକେଟ ଖେଳ କଥା ପଡଲେ ବାବୁ ଭାଇନା ଶେଖର ମିଶ୍ରଙ୍କ କଥା କୁହନ୍ତି । ସେ ତାଙ୍କ କଲେଜ ଅମଳରେ ସାଙ୍ଗ ଥିଲେ । ବାବୁ ଭାଇନାଙ୍କ ମତରେ ଶେଖର ମିଶ୍ର ଯଦି ଭଙ୍ଗ ଖାଇ କ୍ରିକେଟ କଣ୍ଟ୍ରୋଲ ବୋର୍ଡର ସେକ୍ରେଟେରୀଙ୍କୁ ଋପୁଡାଏ ନମାରି ଥାଆନ୍ତେ ତାହେଲେ ଏପାବତ୍ ସେ କୁଆଡେ ଭାରତର ପହିଲା ନମ୍ବର ଉଇକେଟ କିପର ହୋଇ ରହିଥାନ୍ତେ । ଶେଖର ଭାରି ଲୋକପ୍ରିୟ ଥିଲେ । ଏମିତିକି କଲିକତାରୁ ଜଗନ୍ନାଥ ଦର୍ଶନ କରିବାକୁ ଆସୁଥିବା ବଙ୍ଗାଳୀମାନେ କଟକରେ ଅଟକୁ ଥିଲେ, ଶେଖରଙ୍କ ଖେଳ ଦେଖିବା ପାଇଁ । ଶେଖର କିନ୍ତୁ ଭାରି ଭୋଳା, ମଦପିଇ ଚଢ଼ୁଥିବେ ପଡଆରେ । ତେଣୁ ବେଳେ ବେଳେ ଟୁରିଷ୍ଟମାନଙ୍କୁ କଟକରେ ଅଧିକା ଦିନ ରହିବାକୁ ପଡ଼େ, ଶେଖରଙ୍କ ଖେଳ ଦେଖିବା ପାଇଁ ।

Digitized by srujanika@gmail.com

ଓଡ଼ିଶାରେ ଏମିତି କୌଣସି କ୍ରିକେଟ ଖେଳାଳି ଜନ୍ମି ନାହାନ୍ତି ଜାଣି ଦୁଃଖ। ଆସେ ବାବୁ ଭଇନାଙ୍କ କଥା ବିଶ୍ରାମ କରିଯାଉ ଆଉ ଭଗବତୀଙ୍କ ପାଖରେ ଦୀପ ଜାଳୁ ଭବିଷ୍ୟତରେ ଶେଖର ମିଶ୍ର ଭଳିଆ କ୍ରିକେଟ ଖେଳାଳି ହେବା ପାଇଁ।

ତାଙ୍କର ଘଟଣା ବହୁଳ ଜୀବନରେ ସବୁଠାରୁ ଚିତ୍ତାକର୍ଷକ ଅଧ୍ୟାୟ ହେଲା, ଭୁବନେଶ୍ୱର ଏରୋଡ୍ରମରେ ଗ୍ରାଉଣ୍ଡ ଇଞ୍ଜିନିୟରିଂ ପଢୁଥିବା ସମୟର ଅଭିଜ୍ଞତା ଗୁଡ଼ାକ, ଥରେ ଜଣେ ଅଷ୍ଟ୍ରେଲିୟ଼ାନ ପାଇଲଟ ବାବୁ ଭଇନାଙ୍କୁ ପଛରେ ବସାଇ ଏରୋବାଟିକସ ଦେଖାଉ ଦେଖାଉ କେମିତି ମହାନଦୀର ରେଳ ପୋଲର ଦୁଇଟି ଖୁଣ୍ଟର ଭିତର ଦେଇ ଡେରେଡେଭିଲ କରି ଏମିତି ବାଟରେ ପ୍ଲେନଟା ନେଇଗଲେ ଯେ ଭିତରେ ବସିଥିବା ବାବୁ ଭଇନାଙ୍କ ଉପରେ ପାଣି ଛିଟିକା ପଡ଼ିଲା, ଏଇକଥା ଗୁଡ଼ାକ ଶୁଣିବାକୁ ଭଲଲାଗେ। ଆମେ ସମସ୍ତେ ଜାଣୁ ଯେ କଥା ଗୁଡ଼ାକ ନିହାତି ଅବାନ୍ତର। ମୁଁ ପ୍ରତିଥର ବସ୍‌ରେ ମହାନଦୀ ଉପର ଦେଇ ଆସିଲାବେଳେ ରେଳ ପୋଲକୁ ଦେଖେ ଆଉ ଏହା ଭିତର ଦେଇ କୌଣସି ପ୍ଲେନ ଚାଲି ଯିବାଟା ଯେ ନିହାତି ଅସମ୍ଭବ ଆଉ ବାଲୁ ଗପ ଏକଥା ମଧ୍ୟ ଅନୁମାନ କରିଛି। ତଥାପି ରାତିରେ ପହଞ୍ଚିବା ମାତ୍ରେଇ ମୁଁ ଚାଲିଯାଏ ସେଇ ପେଣ୍ଡାଲ ପାଖକୁ ବାବୁ ଭଇନାଙ୍କ ଗପ ଶୁଣିବାକୁ। ସେଇଟା ହେଲା ବାବୁ ଭଇନାଙ୍କର ବାକ୍ ଚତୁରୀର ବାହାଦୁରୀ ଆଉ ଶ୍ରୋତାମାନଙ୍କ ଉପରେ ତାଙ୍କର ପ୍ରଭାବର ଏକ ଜ୍ୱଳନ୍ତ ଉଦାହରଣ। ଖାଲି କଥା କହିବାରେ ନୁହେଁ, ଅନ୍ୟମାନଙ୍କ କଥାରେ କଥା ଯୋଡ଼ିବା, କଥାକୁ କଥା ଯୋଡ଼ି କଥାର କୋଣାର୍କ ଗଢ଼ିବା ଶେଷରେ ମୁଣ୍ଡି ମାରିବା ଏଇସବୁ କାମରେ ବାବୁ ଭଇନା ଧୁରନ୍ଧର।

ଚାକିରୀ, ଘର ସଂସାର ଝଞ୍ଜାଳରେ ମୁଁ ଅନେକ ଦିନ ହେଲା ଗାଁକୁ ଯାଇ ପାରିନାହିଁ। କିନ୍ତୁ ଗାଁର ପିଲେ ମୋ ଘରକୁ ଆସିଲେ ବାବୁ ଭଇନାଙ୍କ ନୂଆ ନୂଆ କଥାଗୁଡ଼ାକ ବିଷୟରେ କହନ୍ତି।

ବୋକା ବାଜଲିଆଙ୍କ ଆଗରେ ସିନା ବାବୁ ଭଇନା ନେତା ବନନ୍ତି କିନ୍ତୁ ତାଙ୍କ ବୟସର ଅନ୍ୟାନ୍ୟ ଲୋକମାନଙ୍କ ପରି ଗାଁରେ ତାଙ୍କର ଖାତିରି ନଥାଏ। ତାହା ନିମିତ୍ତକୁ ଧଡ଼-ସାଆନ୍ତେ, ଶଙ୍କର ଗୋସାଇଁ ମାମଲତକାର ହୁଅନ୍ତି। ମୁରବି ଦେଖାନ୍ତି। କିନ୍ତୁ ବାବୁ ଭଇନାଙ୍କର ସେଠି ବାଟଡି ନଥାଏ। ତାଙ୍କ ନାଁ ପଡ଼ିଲେ ସମସ୍ତେ ନାକ ଟେକନ୍ତି। କହନ୍ତି "ହ୍ୟାପ ଗାଲୁଆଟାଏ। କଞ୍ଚା ମିଛ କଥା ଗୁଡ଼ାକ କହେ, ତାଦେଇ କିଛି ହବନି। ଖାଇପିଇ ସଞ୍ଜ ଚଢ଼ୁ ନଚଢ଼ୁଣି ଦଳେ ବାଘୋରିଆଙ୍କୁ ନେଇ ଭଙ୍ଗବଟା ନହେଲେ ଗାଲୁଗପ।

Digitized by srujanika@gmail.com

ମୁଁ କିନ୍ତୁ ଭବେ କାବୁ ଭଇନା ଜଣେ ଅଭଶପ୍ତ କଳାକାର । ସେ ଅନେକ ଲୋକଙ୍କର ମନୋରଞ୍ଜନ କରନ୍ତି । କେତେ ଶୋକେ ପିଇ ଦଣ୍ଡେ ଜିଇଥିବା ଲୋକଙ୍କ ମୁହଁରେ ହସ ଫୁଟାଇ ପାରନ୍ତି । କିନ୍ତୁ ତାଙ୍କ ପାଇଁ ତାଳି ମାତ୍ର ନଥାଏ କି ଫୁଲ ତୋଡ଼ା ନଥାଏ । ସେ ଗୋଟିଏ ହେଲେ ଟେପ ନଲେଖି ମଧ୍ୟ ଜଣେ ଉଚ୍ଚକୋଟୀର ଗାଳ୍ପିକ । ଗୋଟିଏ ହେଲେ ବହି ନଛପେଇ ମଧ୍ୟ ଜଣେ ସଂଭ୍ରାନ୍ତ ସାହିତ୍ୟିକ ।

ଏବେ କାବୁ ଭଇନା ଆଉ ଆଗର କାବୁ ଭଇନା ହୋଇ ନାହାନ୍ତି । ଅଭବ ଅନାଟନ ସାଙ୍ଗକୁ ବଢ଼ୁଥିବା ବୟସ ତାଙ୍କଠାରୁ ପ୍ରତିଦିନ ଟିକସ ଆଦାୟ କରିବାରେ ଲାଗିଲେଣି । ଆମ ଗାଁ ପେଣ୍ଡାଲରେ ଆଉ କଥାରେ କୋଣାର୍କ ତିଆ ହେଉଛିକି ନାହିଁ ମୁଁ ଜାଣିନି । କାବୁ ଭଇନା ଆଗପରି ମୂର୍ଚ୍ଛି ମାରୁଛନ୍ତି କି ନାହିଁ ସେଖବର ମୁଁ ରଖି ନାହିଁ । ପ୍ରାୟ ବର୍ଷେ ହେବ ମୁଁ ଗାଁକୁ ଯାଇନି । ଜଣ ଗୋଟାଏ ପରୀକ୍ଷା ଦେବାପାଇଁ ଗାଁର ପିଲା ଦିଟା ଆସିଥିଲେ । କହୁଥିଲେ କାବୁ ଭଇନାଙ୍କ ଦେହ ଭଲ ନାହିଁ ।

ଦିନେ ଗାଁରୁ ଚିଠି ପାଇଲି କାବୁ ଭଇନାଙ୍କ ଦେହ ଅତି ଖରାପ । ଆଉ ବେଶୀ ଦିନ ନୁହେଁ । ମୁଁ ଗାଁକୁ ବାହାରିଲି । ଯେତେହେଲେ ଆମର ଜ୍ଞାତି, ତାଛଡ଼ା କୈଶୋର ଆଉ ଆଦ୍ୟ ଯୌବନରେ କାବୁ ଭଇନାହିଁ ତ ଆମକୁ ନୂଆ ନୂଆ ସ୍ୱପ୍ନ ଦେଖିବାର ଖୋରାକ ଯୋଗାଇଥିଲେ ।

ଗାଁରେ ପହଞ୍ଚି ଦେଖିଲି କାବୁ ଭଇନା ଆଉ ଉଠି ପାରୁ ନାହାନ୍ତି । ତାଙ୍କ ନୂଆଁଣିଆ ଘରଘରର ଦାଣ୍ଡ ବଖରାଟାରେ ଗୋଟିଏ ଝିଟିଆରେ ଶୋଇ ରହିଛନ୍ତି । ବାହାରେ ଉଭଜ ଠିଆ ହେଇଥିଲେ । ମୁଁ ଭଲମନ୍ଦ ପଚରିବାରୁ ଆଖିରୁ ଲୁହପୋଛି କହିଲେ ଜୀବନଟା ସାରା ତ କିଛି କଲେ ନାହିଁ, ଖାଲି ଏଣ୍ଡୁ ତେଣ୍ଡୁ ଗାଲୁ ଗପି ଗପି ଦିନଗଲା । ଏବେ ଏତେ ସରି ହେଇ ପଡ଼ିଛନ୍ତି, ପଥି କରିବା ପାଇଁ ହେଲେ କଣ ମୋ ପାଖରେ ଫଟା କଉଡ଼ି ଟିଏ ଅଛି ।

କାବୁ ଭଇନା ମତେ ଦେଖି ଶୁଖିଲା ହସଟିଏ ହସିଲେ । ପଚାରିଲି "ଭଇନା କେମିତି ଅଛ । ଆଜି ଟିକିଏ ଭଲ ଲାଗୁଛି ତ ?" ସେ ସେମିତି ଛାତକୁ ଉହିଁ ଖଙ୍କେଇ ଖଙ୍କେଇ କହିଲେ "ଆରେ ଆଉ ବେଶୀ ସମୟ ନୁହଁ । କାଳିଆ କାଳିଆ ଦିଟା ଷଣ୍ଢମାର୍କା ଜମଦୂତ ମୋ ପାଖରେ ଠିଆ ହେଇଛନ୍ତି । ମୁଁ ପରିଷ୍କାର ଦେଖି ପାରୁଛି ।"

ସତକୁ ସତ ସକାଳୁ ସକାଳୁ ଖବର ପାଇଲି ରାତିରେ କାବୁ ଭଇନା ଚାଲିଗଲେ ।

Digitized by srujanika@gmail.com

ତାଙ୍କର ଶେଷକୃତ୍ୟ ସାରି ସନ୍ଧ୍ୟାବେଳେ ଟ୍ରେନ ଧରିବା ପାଇଁ ବାହାରିଲି । ଦେଖିଲି ପେଣ୍ଡାଲଟା ଖାଲି ପଡ଼ିଛି । ସତେ ଯେମିତି କାବୁ ଭଉନାଙ୍କ ସାଙ୍ଗରେ ତା ଦିହରୁ ମଧ୍ୟ ପ୍ରାଣବାୟୁ ଉଡ଼ ଯାଇଛି ।

କିଛି ଦୂର ଚାଲ ପରେ ମତେ ଲାଗିଲା ପଛରୁ ମତେ କିଏ ଡାକୁଛି । ବୁଲି ଦେଖିଲି ସେଇ ଅନ୍ଧାରୁଆ ପେଣ୍ଡାଲ ଉପରେ କାବୁ ଭଉନା ବସିଛନ୍ତି । ଆଖି ଦିଟା କୁମ୍ଭାଟୁଆ ଆଖିପରି ନାଲ, ମଧୁରିଆ ନିଶାଟେ ଧରି ଆସିଛି ଯେମିତି । ପାନ ଚକୁଳେଇ ଚକୁଳେଇ ମତେ କହୁଛନ୍ତି ''ଆରେ ତମେ ଶଳେ ତ ପିଲା ମାଇପଙ୍କୁ ନେଇ ସହରରେ ରହିଲ ଯେ ଗାଁ ଦାଣ୍ଡ ମାଡ଼ଲନି । ମୁଁ ଏଠି ଏକୁଟିଆ କ'ଣ କରିଥାନ୍ତି ।''

Digitized by srujanika@gmail.com

# ଉତ୍ତରଣର ବର୍ଣ୍ଣବୋଧ

ଆଜିକୁ ୨୪ ବର୍ଷ ତଳେ ମୁଁ ଏହି ଜୁନାଗଡ ସହରରେ ନୂଆ ହୋଇ ଏକଜକ୍ୟୁଟିଭ ଇଞ୍ଜିନିୟର ଭାବରେ ଜଏନ କରିଥାଏ । ଏଠି ଗୋଟିଏ ସାର କାରଖାନା ପାଇଁ ପ୍ରସ୍ତୁତି ଚାଲିଥାଏ । ଜୁନାଗଡର ରୂପରେଖ ଯେ ଖୁବ୍ ଶୀଘ୍ର ବଦଳିବାକୁ ଯାଉଛି ଏବଂ ଏଇଟା ଯେ ଓଡ଼ିଶା ମାନଚିତ୍ରରେ ଏକ ଚିହ୍ନିତ ସ୍ଥାନ ହେବାକୁ ଯାଉଛି ଏକଥା କେହି ଜାଣନ୍ତୁ ବା ନଜାଣନ୍ତୁ ତେଜି ଭଲଭାବରେ ଜାଣି ପାରିଥିଲା ।

ତେଜି ଓରଫ୍ ତେଜେନ୍ଦ୍ର ସିଂ । ୨୪/୨୫ ବର୍ଷର ପଞ୍ଜାବୀ ଯୁବକ । ଘର ପଞ୍ଜାବ । ମୁଣ୍ଡରେ ପଗଡ଼ି, ମୁହଁରେ ଦାଢ଼ି । ଗୋଟିଏ ସେକେଣ୍ଡ ହ୍ୟାଣ୍ଡ ଟ୍ରକ୍ ନେଇ ସେ ଚାଲି ଆସିଥିଲା, ତାର ଦୂର ସମ୍ପର୍କୀୟ ଭିଣେଇ ପାଖକୁ, ଏଇ ଜୁନାଗଡକୁ ।

ଅର୍ଡର ପାଇବା ପାଇଁ ଅଫିସର ଅନ୍ୟାନ୍ୟ କର୍ମଚାରୀମାନଙ୍କୁ ଲାଞ୍ଚ ଦିଏ । କାହାପାଇଁ ଘଣ୍ଟା କିଣିଦିଏ ତ କାହାକୁ ନେଇ ମଦ ପିଆଇଥାଏ । ମୁଁ ସଚ୍ଚୋଟ୍, ସେ ସବୁର ଧାର୍ ଧାରେନା । ସେଥିପାଇଁ ମୋ ପାଖରେ ସାକୁଲେଇ ହୁଏ, କାନ କୁଣ୍ଡାଏ, ତାର ଦାରିଦ୍ର୍ୟ ବଖାଣେ । ମୋ ଆଖି ଉଚ୍ଛୁଳି ଆସେ । ବିଚରା, ମୋଠାରୁ ବୟସରେ ସାନ ହେବ, ଅଥଚ ଘରଦ୍ୱାର ଟା', ଗଣ୍ଡା ଛୁଆ କି ଦୁଃଖ ପାଉଛି । ମୁଁ ତାକୁ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦିଏ । ଏମିତି ତିନି ବର୍ଷ ବିତିଗଲା ।

ମୋର ବଦଳି ବେଳକୁ ଟ୍ରକ୍ ଦରକାର । ତେଜି ଖବର ପାଇଲା ମାତ୍ରେ ତାର ଦୁଇଟି ନୂଆ ଟ୍ରକ୍ ନେଇ ହାଜର । ନୂଆ ଜାଗାରେ ପହଞ୍ଚିଲା ପରେ ତେଜି ମୋଠୁ ପଇସା ନେବାକୁ ରାଜି ହେଲାନି ।

"ସାର୍ ଯେତେବେଳେ ସିନା ଆପଣ ଜୁନାଗଡରେ ଥିଲେ ଯେ ମୋଠୁ ସାହାଯ୍ୟ ନବାଟା ଲାଞ୍ଚ ବୋଲି ଭାବୁଥିଲେ । ବର୍ତ୍ତମାନ ତ ଆପଣ ଆଉ ଜୁନାଗଡରେ ଏକଜ୍ୟୁକ୍ୟୁଟିଭ୍ ଇଞ୍ଜିନିୟର୍ ନାହାନ୍ତି । ଏଇଟା ଗୋଟିଏ ବନ୍ଧୁର କର୍ତ୍ତବ୍ୟ ବୋଲି ଧରି ନିଅନ୍ତୁ ।"

Digitized by srujanika@gmail.com

ଯା ଭିତରେ ଅନେକ ଦିନ ବିତିଗଲାଣି । ମୁଁ କ୍ଷେତେଥର ସୁନାଗଡ ଯାଇଛି । ସବୁଥର ତେଜି ମତେ ଶ୍ରେଷ୍ଠ ହ୍ୱାଭସରେ ଦେଖାକରେ । ତାର ଉନ୍ନତିର କାହାଣୀ କୁହେ । ତେଜି ଗେଡ୍‌ଓ୍ୱେଜ୍, ତେଜି କନ୍‌ଷ୍ଟ୍ରକ୍‌ସନ ପ୍ରାଇଭେଟ ଲିମିଟେଡ, ତେଜି ଇଣ୍ଡଷ୍ଟ୍ରୀଜ୍ ଇତ୍ୟାଦି ଛୋଟ ବଡ କେତେ ଅନୁଷ୍ଠାନ । ମୋଟ ଉପରେ ନୂତନ ଶିଳ୍ପନଗରୀ ସୁନାଗଡର ଅପ୍ରତିଦ୍ୱନ୍ଦୀ ଶିଳ୍ପପତି ତେଜେନ୍ଦ୍ର ସିଂ । ମତେ ଆଶ୍ଚର୍ଯ୍ୟ ଲାଗେ ।

ଅଳ୍ପଦିନ ତଳେ ମୁଁ ତେଜି ଠୁଁ ଗୋଟିଏ ନିମନ୍ତ୍ରଣ ପତ୍ର ପାଇଥିଲି । ସେ ଗୋଟିଏ ମିନି ସିମେଣ୍ଟ ପ୍ଲାଣ୍ଟ ବସାଉଛି । ୩୦ କୋଟି ଟଙ୍କାର ପ୍ରୋଜେକ୍ଟ । ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ କରିବେ । ମୁଁ ମୋ ସ୍ତ୍ରୀ ଶିନୀକୁ ନେଇ ଆସିଛି ସୁନାଗଡ । ମୋ ଉଦ୍ଦେଶ୍ୟ ମହତ୍ । ମୋ ପୁଅ ଚିନୁ ଦୁଇ ବର୍ଷ ହେଲା ଏମ. ଏ. ପାଶ୍ କରି କଂପିଟେଟିଭ୍ ଦେଉଛି । କେଉଁଠି ବାଜୁନି । ଯଦି ତେଜି କାରଖାନାରେ କିଛି ଭେକେନ୍‌ସି ଥାଏ..............।

ତେଜି ତା ଘରକୁ ଆମକୁ ଖାଇବାକୁ ଡାକିଥାଏ । ଗେଟ୍ ପାଖରୁ ତେଜି ଆଉ ତା ସ୍ତ୍ରୀ ଆମକୁ ପାଛୋଟି ନେଲେ । ତେଜି ସ୍ତ୍ରୀ ଶିନୀକୁ ଘର ଭିତରକୁ ନେଇଗଲା । ତେଜି ଆଉ ମୁଁ ତା ଡ୍ରଇଂ ରୁମ୍‌ରେ ବସିଲୁ । ତେଜିକୁ ମୁଁ ଚିନୁ କଥା କହିଲି । ତେଜି ଖୁସି । କହିଲା ତାର ବି ଗୋଟିଏ ଶିକ୍ଷିତ ଯୁବକ ଦରକାର ଥିଲା । ପବ୍ଲିକ୍ ରିଲେସନ୍ ଡିପାର୍ଟମେଣ୍ଟରେ । ଚିନୁ ସେଥିପାଇଁ ଉପଯୁକ୍ତ । ପହିଲା ଠୁଁ ପଠାଇ ଦିଅନ୍ତୁ ଏଠାକୁ । ପନ୍ଦର ଶହ ଟଙ୍କା ଦରମା । ଘର ବି ମିଳିବ । ତା ଛଡା ଏଠି ଘର ପରି ଚଳିବ ।

ଖାଇବା ପରେ ତେଜିର ମୋର ତା ଡ୍ରଇଂ ରୁମ୍‌ରେ ବସିଥାଉ । ଲିଓ କ୍ଲବର ମେମ୍ବରମାନେ ଆସିଲେ ଚନ୍ଦା ପାଇଁ । ଭେଗଇଟି ସୋ ହେବ । ସମସ୍ତେ ଯୁବକ । ତେଜି ସମସ୍ତଙ୍କୁ ହ୍ୱିସ୍‌କି ପିଆଇ ଆପ୍ୟାୟିତ କଲା । ଅଢେଇ ହଜାରଟଙ୍କା ଚନ୍ଦା ଦେଲା । ସେମାନେ ଗଲାପରେ ମୁଁ ତାକୁ ପଚାରିଲି ସେ ପିଲାଙ୍କୁ ମଦ କାହିଁକି ପିଆଇଲା । ତାଛଡା ଭେଗଇଟି ସୋ ପାଇଁ ଏତେ ଟଙ୍କା ଦବାର ଦରକାର କ'ଣ । ତେଜି ହସିଲା । କହିଲା ଏମାନେ ହେଲେ ଏ ସହରର ବଡ଼ ବଡ ଅଫିସର, ନେତା, ଓକିଲମାନଙ୍କ ପୁଅ । ସେମାନଙ୍କର ବାପାମାନେ ଲାୟନସ କ୍ଲବର ମେମ୍ବର । ପୁଅମାନେ ଲିଓ କ୍ଲବ୍‌ର ମେମ୍ବର । ବାପାମାନେ ଏମାନଙ୍କୁ ପଠାଇଛନ୍ତି ମୋ ପାଖକୁ ଚନ୍ଦା ପାଇଁ । ଏମାନଙ୍କୁ ଚନ୍ଦା ଦେଇ ମଦ ପିଆଇ ହାତରେ ରଖିପାରିଲେ ତାର ମଙ୍ଗଳ ।

କିଛି ସମୟ ପରେ ତେଜି ଘରକୁ ସ୍ଥାନୀୟ ଅଫିସର ଜଣେ ଆସିଲେ । ତେଜି ଦଉଡ଼ ଯାଇ ପାଛୋଟି ଆଣିଲା । କାନ କୁଣ୍ଡାଇଲା, ଦାନ୍ତ ନିକୁଟିଲା, ସତେ ଯେମିତି

Digitized by srujanika@gmail.com

ଘୋଡତଳେ ଲେଟିଯିବ । ମତେ ତାର ଏଇ ସ୍ୱଭବଟା ଭରି ଖରପ ଲାଗେ । କେମିତି କୁକୁର ସ୍ୱଭବ । ଗୋଡତଳେ ଲଟେଇ ହବା ସ୍ୱଭବ ।

ସେ ଗଳ୍ପ ପରେ ମୁଁ ତେଜିକୁ କହିଲି ତମେ ଏମାନଙ୍କ ଆଗରେ ଏମିତି ଛୋଟ କାହିଁକି ହୋଇ ଯାଉଛ । ଏମାନଙ୍କ ପରି କେତେଟାଙ୍କୁ ତ ତମେ ଦରମା ଦେଇ ରଖିପାରିବ । ତେଜି ହୋ ହୋ ହୋଇ ହସି ଉଠିଲା । (ତେଜିକୁ ନିଶା ଧରିଲାଣି ବୋଧେ) କହିଲା "ଏମାନେ ନା ସାହେବ ହୋଇ ଜନ୍ମ ହୋଇଛନ୍ତି ନା ଏମାନେ କେବେ ସାହେବ ହୋଇ ପାରିବେ । କିନ୍ତୁ ଏମାନଙ୍କର ସାହେବ ହେବାର ଭରି ଇଚ୍ଛା । ତେଣୁ ଏମାନଙ୍କୁ ସାହେବ, ତାଙ୍କ ସ୍ତ୍ରୀମାନଙ୍କୁ ମ୍ୟାଡାମ୍ ଡାକି, ତାଙ୍କୁ ସଲାମ୍ କରି ତାଙ୍କଠାରୁ କାମ ଟିକିଏ ଆଦାୟ କରି ଦେଲେ କ୍ଷତି କଣ ?"

ତେଜିର ଆଉ ଗୋଟିଏ ଗୁଣ ମତେ ଭରି ଆଶ୍ଚର୍ଯ୍ୟ ଲାଗେ । ଯେଉଁମାନେ ତାଙ୍କୁ ବିଚ୍ ବଜାରରେ, ସଭ ସମିତିରେ ଗାଳି ଦିଅନ୍ତି, ତା ଘର ଆଗରେ ଅନଶନ କରନ୍ତି, ତେଜି ସେମାନଙ୍କ ଠାରୁ ମଧ୍ୟ କାମ ଆଦାୟ କରିନିଏ ।

ମୁଁ ତାକୁ ପଚରିଲି ସ୍ଥାନୀୟ ଏମ. ଏଲ. ଏ. ପ୍ରସନ୍ନ ପଟ୍ଟନାୟକ ତ ସବୁବେଳେ ତା ବିରୁଦ୍ଧରେ ସ୍ଲୋଗାନ ଦେଇ ଆସିଛି । ସେ ତାକୁ କାହିଁକି ଚୁପ୍ କରି ଦେଉନାହିଁ । ତେଜି ପୁଣିଥରେ ଜୋର୍‌ରେ ହସି ଉଠିଲା । (ତେଜି ପୁରା ଡାଉନ୍ ହୋଇଗଲାଣି ବୋଧେ) କହିଲା ପ୍ରସନ୍ନ ପଟ୍ଟନାୟକ ତାଠାରୁ ପଇସା ନେଇ ଇଲେକ୍‌ସନ ଲଢ଼ିଛି । ତାର ନୂଆ କାରଖାନା ଯେଉଁଠି ତିଆରି ହେଉଛି, ସେଠି ଆଗରୁ ଗୋଟିଏ କଲେଜ ହବାର ଥିଲା । କିନ୍ତୁ ତେଜି ପ୍ରସନ୍ନ ପଟ୍ଟନାୟକଙ୍କ ଜରିଆରେ ଉପର ମହଲରେ ଧରାଧରି କଲା । ଶେଷରେ ଶିକ୍ଷାମନ୍ତ୍ରୀ ମତ ଦେଲେ ଯେ ସହର ଭିତରେ କଲେଜ ରହିବା ଉଚିତ ନୁହେଁ । ପିଲାମାନେ ସିନେମା ଦେଖିବେ, ବଜାରରେ ବୁଲିବେ । ସତ୍ୟବାଦୀ ବନବିଦ୍ୟାଳୟର ଆଦର୍ଶରେ ସବୁ ଶିକ୍ଷାନୁଷ୍ଠାନ ଅନୁପ୍ରାଣିତ ହେବା ଉଚିତ ।

ବେଶ୍ ତାପରେ କଲେଜ ଉଠିଗଲା ସହରଠାରୁ ସାତ କିଲୋମିଟର ଦୂରକୁ । ପିଲାମାନେ ସାଇକେଲ୍ ପେଲୁଥାନ୍ତୁ । ତେଜି ତା ଘର ବାରଣ୍ଡାରେ ବସି ଦେଖିପାରିବ ତା କାରଖାନା ଲନ୍‌ରେ ମାଳି ପାଣି ଦେଉଛି କି ନାହିଁ । ପ୍ରସନ୍ନ ପଟ୍ଟନାୟକ ଅନଶନ କରୁ, ଆନ୍ଦୋଳନ କରୁ.. ......।

ଫେରିଲାବେଳେ ବିନୀ ପଚରିଲା । "ତମେ ଚିନୁ କଥା କହିଥିଲ" ।

ମୁଁ କହିଲି ହଁ, ସେ ଚିନୁକୁ ପହିଲାରୁ ଭଏନ୍ କରିବାକୁ କହିଛି ।

Digitized by srujanika@gmail.com

ତାପରେ ଅନ୍ୟମନସ୍କ ଭାବରେ କହିଲି ତେଜି ଆଜିକାଲି ଖୁବ୍ ବଡ ମଣିଷ ହୋଇଗଲେଣି । ଦିନ କେଇଟାରେ ପୁରା କୋଟିପତି । ରିନୀ କହିଲା "ହେଲେ କଣ ହେଲା, ତାର କଣ ସେ ସ୍ୱଭାବ ଗଲାଣି । ଦେଖିଲନି ତା ସ୍ତ୍ରୀ ମତେ କେମିତି ପାଛୋଟି ନେଲା, ସତେ ଯେମିତି ମୁଁ ଲେଡ ମାଉଣ୍ଟ ବ୍ୟାଟେନ୍ ।"

ମୁଁ କହିଲି ସେଇଥି ପାଇଁ ତ ତେଜି ଆଜି ଏତେ ତରକ କରି ପାରିଛି । ଏବେ କାରଖାନା କରିପାରିଛି, ଚିନୁ ଭଳିଆ କେତେ ବେକାରଙ୍କୁ ଚାକିରୀ ଦେଇ ପାରିଛି ।"

ରିନୀ କେତେ ସମୟ ଚୁପ୍ ମାରି ବସିଲା ପରେ କହିଲା ତମେ କିନ୍ତୁ କାହାକୁ କହିବନି ଯେ ତମେ ତେଜିକୁ କହି ଚିନୁକୁ ଚାକିରୀରେ ରଖେଇ ଦେଇଛ ବୋଲି । ଯିଏ ପଚାରିଲେ କହିବ ଚିନୁ ଇଣ୍ଟରଭ୍ୟୁ ଦେଇ ସିଲେକ୍ଟ ହୋଇଛି । ଏଇଟା କଂପିଟେଟିଭ୍ ଯୁଗ କି ନା…… ..।



Digitized by srujanika@gmail.com

# ଭିନ୍ନ ସ୍ୱର

ଫୋନରେ ଖବରଟା ପାଇବା ପରେ ବିଜୁ ଆଶ୍ଚର୍ଯ୍ୟ ହୋଇଗଲା । ସାମ୍ବାଦିକତାରେ ତାର ଦୀର୍ଘ ପାଞ୍ଚ ବର୍ଷର ଅଭିଜ୍ଞତା । କିନ୍ତୁ ସେ ଏଭଳି ଗୋଟିଏ ଖବର ଆଗରୁ କେବେ ପାଇ ନଥିଲା । ଗୋଟିଏ ଛୋଟିଆ ଶିଳ୍ପ ନଗରୀରେ ଥିବା ଗେଷ୍ଟ ହାଉସର ଜଣେ ଚୌକିଦାର ଜଣେ ବିଶିଷ୍ଟ ଶ୍ରମିକ ନେତାଙ୍କୁ ହତ୍ୟାକଲା କାହିଁକି ? ହତ୍ୟା କରି ସାରି ପୋଲିସ୍ ପାଖରେ ପୁଣି ଆତ୍ମ ସମର୍ପଣ କାହିଁକି କଲା । ଶ୍ରମିକ ନେତା ପଙ୍କଜ ବାବୁଙ୍କ ସାଙ୍ଗରେ ଚୌକିଦାରର ବା କି ସମ୍ପର୍କ ? ଯାହାହେଉ କାଲିର କାଗଜ ହେଡ୍ ଲାଇନ ପାଇଁ ଗୋଟିଏ ଭଲ ଖୋରାକ । ବିଜୁ ମଟର ସାଇକେଲ ନେଇ ଚାଲିଲା କାଲ୍କା ।

କାଲ୍କା ପୋଲିସ୍ ଷ୍ଟେସନରେ ପହଞ୍ଚି ନିଜର ପରିଚୟ ପତ୍ର ଦେଖାଇ ଆସାମୀକୁ ଯେତେବେଳେ ଦେଖିଲା, ବିଜୁ ପୁରା ଅବାକ୍ ହୋଇଗଲା । କାରଣ ଏଇ ଲୋକଟି ସାଙ୍ଗରେ ତାରଆଗରୁ ଦୁଇଥର ଦେଖା ହୋଇଥିଲା । ଘଟଣାଟି ଧୀରେ ଧୀରେ ସେ ବୁଝି ପାରୁଥିଲା ।

ପାଞ୍ଚ ବର୍ଷ ତଳର କଥା । ଚଣ୍ଡିଗଡ଼ରୁ ପ୍ରକାଶିତ ଦୈନିକ ଟ୍ରିବ୍ୟୁନ୍ ରେ ଜଣେ ସାମ୍ବାଦିକ ଭାବରେ ସେ ନୂଆ ନୂଆ ଯୋଗ ଦେଇଥାଏ । ଗୋଟିଏ ସିମେଣ୍ଟ କାରଖାନାକୁ ନେଇ ଗଢ଼ି ଉଠିଥିବା ଛୋଟିଆ ଶିଳ୍ପ ନଗରୀ ସୁରଜପୁରକୁ ସେ ଯାଇଥିଲା ଗୋଟିଏ ସାମ୍ବାଦିକ ସମ୍ମିଳନୀରେ । ସେଠି ଗୋଟିଏ ଦୋକାନରେ ବସି ଚା' ପିଉଥିଲା ବେଳେ ସେ ଦୋକାନୀକୁ ପଚାରି ଦେଇଥିଲା "ଏଠି ଓଡ଼ିଶାର ଲୋକ କିଏ ଅଛନ୍ତି କି ?"

ଦୋକାନୀଟି ତା ମୁହଁକୁ ଚାହିଁ କହିଲା ଏଠି ଅନ୍ୟ କେହିତ ନାହାନ୍ତି କିନ୍ତୁ ଦୁଇ ଦିନ ହେଲା ଗୋଟିଏ ପିଲା ତା ଦୋକାନରେ ଆସି କାମ କରୁଛି । ପିଲାଟି ପାଠ ସାଠ ପଢ଼ିଥିବ, କାରଣ ଇଂରାଜୀ ପଢ଼ି ପାରୁଛି । କିନ୍ତୁ ହିନ୍ଦୀ ପଢ଼ି ପାରୁନି କି କହି ପାରୁନି ।

ବିଜୁ ବିଶ୍ୱାସ କରି ପାରିଲାନି । ହୋଟେଲରେ କାମ କରିବା ପାଇଁ ପିଲାଟେ ଓଡ଼ିଶା ଛାଡ଼ି ଏତେ ଦୂର ଆସିଛି । କାହିଁ ଓଡ଼ିଶା ଆଉ କାହିଁ ହରିୟାନାର

Digitized by srujanika@gmail.com

ସୁବଡପୁର । ପିଲାଟିକୁ ପଚରି ଭଲ କରି ଜାଣିବାକୁ ପାଇଲା ଯେ ତା ଘର ବାରିପଦା ପାଖ କେଉଁ ମଫସଲରେ । ପିଲାଦିନୁ ସେ ତା ବାପାଙ୍କୁ ହରାଇଥିଲା । ତା ମା ପର ଘରେ ମୂଲ ଲାଗି ଘର ଚଳାଉଥିଲା ଆଉ ତାକୁ ସ୍କୁଲକୁ ପଠାଉ ଥିଲା । କିନ୍ତୁ ତାର ମେଟ୍ରିକ ପରୀକ୍ଷାର ଫଳ ବାହାରିବାର ଅଳ୍ପ ଦିନ ପରେ ତା ମା' ମ୍ୟାଲେରିଆରେ ମରିଗଲା । ସେ ଆଉ କଲେଜରେ ପଢ଼ି ପାରିଲାନି । ତା'ର ବଡ ଭଉଣୀ ଆଉ ଭିଣେଇ ହରିୟାନାର ପଞ୍ଚକୁଲାରେ ରହନ୍ତି । ତା ଭିଣେଇ ପଞ୍ଚକୁଲା ମିଲିଟାରୀ ଇଉନିଟ ରେ ଜଣେ ଯବାନ । ସେ କାମ ଧନ୍ଦା ଅନ୍ୱେଷଣରେ ପଞ୍ଚକୁଲା ଆସିଥିଲା । କିନ୍ତୁ ଛମାସ ଧରି ବହୁତ ଚେଷ୍ଟା କରି ମଧ୍ୟ କେଉଁଠି ଚାକିରୀର ସନ୍ଧାନ ପାଇଲାନି । ତାକୁ କେହି କିଛି ନକହୁ ଥିଲେ ମଧ୍ୟ ସେ ବୁଝିପାରୁ ଥିଲା ଯେ ସେ ତାର ସ୍ୱଳ୍ପ ବେତନଭୋଗୀ ଭିଣେଇ ଉପରେ ଗୋଟିଏ ବୋଝ ହୋଇଯାଇଛି । ତେଣୁ ସେ ଦିନେ ଗୋଟିଏ ଚିଠି ଛାଡ଼ି ଦେଇ ତାର ଅତ୍ୟାବଶ୍ୟକୀୟ ଜିନିଷ କେତେଟା ଧରି ଗୋଟିଏ ସିମେଣ୍ଟ ବୁହା ଟ୍ରକ୍‌ରେ ସୁବଡପୁର ଚାଲି ଆସିଛି ।

ଶ୍ୟାମଳ ବର୍ଣ୍ଣର ପତଳା ପିଲାଟି ନିରୀହ ନିରୀହ ମନେ ହେଉଥିଲା । ସେ ବିଜୁ ଆଗରେ କହିଥିଲା ଭଲ କାମଟିଏ ନମିଳିଲା ପର୍ଯ୍ୟନ୍ତ ସେ ଯେକୌଣସି କାମ କରିବାକୁ ପ୍ରସ୍ତୁତ ଅଛି । ହୋଟେଲରେ ଅଇଁଠା ଉଠାଇବାରେ କି ପ୍ଲେଟ ସଫା କରିବାରେ ସେ ଆଦୌ ଦ୍ୱିଧା ବୋଧ କରି ନାହିଁ । ପିଲାଟିର ମାନବିକତା ଆଉ ସ୍ପଷ୍ଟବାଦୀତାରେ ବିଜୁ ମୁଗ୍ଧ ହୋଇଗଲା । ଓଡ଼ିଆମାନେ ଯେ କାମ କରିବାରେ ଅନ୍ୟ ପ୍ରଦେଶର ଲୋକମାନଙ୍କ ଠାରୁ କେଉଁ ଗୁଣରେ କମ୍ ନୁହଁନ୍ତି, ଏଇ ପିଲାଟି ତାର ଜ୍ୱଳନ୍ତ ଉଦାହରଣ ।

ତାର ଠିକ୍ ତିନି ମାସ ପରେ ସେ ଖବର ପାଇଲା ଯେ ଶ୍ରମିକ ଆନ୍ଦୋଳନକୁ ନେଇ କରି ସୁବଡପୁର ସିମେଣ୍ଟ କାରଖାନାରେ ବୋମା ଖଞ୍ଜିଥିବା ଅବସ୍ଥାରେ ଗୋଟିଏ ଲୋକ ଧରା ପଡ଼ିଛି ଆଉ ତାକୁ ଥାନାକୁ ପଠାଇ ଦିଆଯାଇଛି । ସେ ଅନୁସନ୍ଧାନ ପାଇଁ ଥାନାକୁ ଯାଇ ସେଇ ଓଡ଼ିଆ ପିଲାଟିକୁ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲା ।

ପଚାରିବାରୁ ସେ କହିଲା ଯେ ହୋଟେଲରେ କାମ କରି ତାର ଦୁଇ ମାସ ବେଶ୍ ଭଲ ଭାବରେ କଟି ଯାଇଥିଲା । କିନ୍ତୁ କାରଖାନାରେ ଶ୍ରମିକ ଆନ୍ଦୋଳନ ଆରମ୍ଭ ହେବାରୁ ତାର ଦୁର୍ଦ୍ଦିନ ଆସି ପହଞ୍ଚିଲା । କାରଖାନାର ଶ୍ରମିକମାନେ ଶ୍ରମିକ ନେତା ପଙ୍କଜ ବାବୁଙ୍କ କଥାରେ ପଡ଼ି ଅଧିକ ବୋନସ୍ ପାଇଁ ଦାବୀ କଲେ । ଏଣେ କାରଖାନାର ମାଲିକ କାରଖାନା ବନ୍ଦ କରିଦେଲେ । ଦୀର୍ଘ ମାସେ

Digitized by srujanika@gmail.com

ଧରି ଏଇ ଆନ୍ଦୋଳନ ଚାଲିଲା । ଶ୍ରମିକମାନଙ୍କ ଘରେ ଚୁଲି ଜଳିବା ବନ୍ଦ ହେଲା । ଯାହାଘରେ ଚୁଲି ଜଳୁନାହିଁ, ସେ ବଜାରରୁ ଗ୍ର ଜଳଖିଆ କଣ ଖାଇବ ? ତେଣୁ ଗ୍ର ଦୋକାନୀଟି ଦୋକାନ ବନ୍ଦ କରି ତା ଗାଁକୁ ପଳାଇଲା ।

ଯାର ଅନ୍ୟ କିଛି ଉପାୟ ନଥିଲା । ସେ ଦୁଇଦିନ ଧରି ଉପାସ ରହିବା ପରେ ଦିନେ ସନ୍ଧ୍ୟାରେ ଦୋକାନ ବାରଣ୍ଡାରେ ଶୋଇଥିବା ଅବସ୍ଥାରେ ଦୁଇଜଣ ଲୋକ ତା ପାଖରେ ପହଞ୍ଚିଲେ । ସେମାନେ ତାକୁ ନୂଆ ରୋଜଗାର ବାଟ କଣେଇବାକୁ କହି ପଙ୍କଜ ବାବୁଙ୍କ ପାଖକୁ ନେଇଗଲେ । ପଙ୍କଜ ବାବୁ ତାକୁ ଦୁଇଶହ ଟଙ୍କା ଦେଇ କହିଲେ ଯେ ସେଦିନ ରାତିରେ ସେ କାରଖାନାର ଗେଟ୍‌ର ବାହାରେ ଥିବା ବରଗଛ ମୂଳକୁ ଯିବ । ସେଠାରେ ଗୋଟିଏ ଇଟା ତଳେ ଥିବା ତାର ପରି ଜିନିଷଟିରେ ନିଆଁ ଲଗାଇ ଦେଇ ଦଉଡ ଚାଲିଆସିବ । ତାକୁ ବୁଝାଇ ଦିଆଗଲା ଯେ, ସେଇଟା ଗୋଟିଏ ବଡ ଗଡମା ପରି ବାଣ । ସେଇଟା ଫୁଟିଲେ କାହାର କ୍ଷତି ହେବନି, କିନ୍ତୁ କାରଖାନାର ମାଲିକ ଡରିଯାଇ କାରଖାନା ଖୋଲା କରିଦେବେ । ସେ ଯଦି ଜାଣି ଥାଆନ୍ତା ଯେ ସେଇଟା ଗୋଟିଏ ଡିନାମାଇଟ୍ ତେବେ ସେ କେବେ ସେଠାକୁ ଯାଇ ନଥାନ୍ତା । ପୋଲିସ୍ କିନ୍ତୁ ଡିନାମାଇଟ୍ ଖଞ୍ଜା ଯିବାର ଖବର ପାଇ ଆଗରୁ ସେଠି ଲୁଚିକରି ଥିଲେ । ସେ ସେଠି ପହଞ୍ଚିବା କ୍ଷଣି ତାକୁ ଆରେଷ୍ଟ କଲେ ।

ତା କଥା ଶୁଣି ବିଜୁ ଖୁବ ଦୁଃଖିତ ହେଲା । ବିଚରା ଓଡିଆ ପିଲାଟେ । ପେଟପୋଷିବ ବୋଲି କି ଯନ୍ତ୍ରଣା ଭୋଗୁଛି । ପରେ ସେ ଖବର ପାଇଲା ତାକୁ ତିନି ବର୍ଷ ସଶ୍ରମ କାରାଦଣ୍ଡ ହୋଇଛି ।

ଆଜି ପଙ୍କଜ ବାବୁଙ୍କ ହତ୍ୟାକାରୀ ଖବରରେ ସେଇ ଲୋକଟିକୁ ହାଜତରେ ଦେଖି ବିଜୁ ଘଟଣାଟି ଅନୁମାନ କରିନେଲା । ଜେଲ୍‌ରୁ ଖସି, ପ୍ରତିଶୋଧ ନେବା ପାଇଁ ହତ୍ୟା କରିଛି ନିଶ୍ଚୟ । ତଥାପି କୌତୁହଳ ଦମନ କରି ନପାରି ଅଫିସର ଇନ୍‌ଚାର୍ଜଙ୍କ ଅନୁମତି ନେଇ ତାକୁ ଦେଖା କଲା ।

ପିଲାଟି କହିଲା ଜେଲ୍‌ରୁ ଖସି ପୁରୁଣା କଥାସବୁ ଭୁଲିଯାଇ ନୂଆ ଜୀବନ ଆରମ୍ଭ କରିବାକୁ ସେ ସ୍ଥିର କରିଥିଲା । କିନ୍ତୁ ଜେଲ୍ ଫେରନ୍ତା ହୋଇଥିବାରୁ ସୁଖପୁରର ବାସିନ୍ଦା ତାକୁ ଆଉ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । ସେ ବାଧ୍ୟ ହୋଇ କାଲକତା ଚାଲି ଆସିଲା । ସେଠାରେ କିଛି ଦିନ ଗୋଟେ ହୋଟେଲରେ କାମ କରିବା ପରେ ତାକୁ ଗୋଟେ କାରିଖାନାର ନୂଆ ହୋଇ ଖୋଲିଥିବା ଗେଷ୍ଟ ହାଉସ୍‌ରେ ଚୌକିଦାର ଚାକିରୀ ମିଳିଗଲା । ସେ ପୁରୁଣା କଥା ସବୁ ଭୁଲିଗଲା । ନୂଆ କାମରେ ମନ ଦେଲା ।

Digitized by srujanika@gmail.com

ଦିନେ ସ୍ଥାନୀୟ ଶ୍ରମିକ ନେତାଙ୍କ ବାହାରୁ କିଏ ବନ୍ଧୁ ଆସିବେ ବୋଲି ଗେଷ୍ଟ ହାଉସ୍‌ରେ ଖାଇବା ପିଇବାର ବିଶେଷ ଆୟୋଜନ ଚାଲିଥାଏ । କିନ୍ତୁ ଶ୍ରମିକ ନେତାଙ୍କ ବନ୍ଧୁ ଯେତେବେଳେ ସନ୍ଧ୍ୟା ବେଳେ ଆସିଲେ ସେ ତାଙ୍କୁ ବେଶ୍ ଚିହ୍ନି ପାରିଲା । ସେ କିନ୍ତୁ ସେଥିପ୍ରତି ଦୃଷ୍ଟି ନଦେଇ ତାଙ୍କ ପାଇଁ ବରାଦ ଅନୁଯାୟୀ ଖାଦ୍ୟ ପାନୀୟର ଆୟୋଜନରେ ଲାଗିଲା । ସମସ୍ତେ ଖାଇ ସାରିଲା ପରେ ସେ ଗେଷ୍ଟ ହାଉସ୍ ପଛପଟରେ ଥିବା ନିଜ ବଖରକୁ ଚାଲିବେଳେ ଦେଖିଲା ଦୁଇଜଣ ଲୋକ ଜଣେ ଗୁଣ୍ଡା ଶ୍ରେଣୀୟ ଲୋକକୁ କଣ ସବୁ ଶିଖାଉ ଛନ୍ତି । ତାପରେ ତାକୁ ପଙ୍କଜବାବୁଙ୍କ ରୁମକୁ ନେଲେ । ସେ ଝରକା ଫାଙ୍କରେ ଦେଖିଲା, ପଙ୍କଜବାବୁ ତାକୁ ବିଡାଏ ଟଙ୍କା ଦେଲେ । ସେ କାନ ଡେରି ଶୁଣିଲା ଯେ କାମ ସରିଲେ ଆଉ ଦଶ ହଜାର ଟଙ୍କା ଦେବେ ବୋଲି ପ୍ରତିଶ୍ରୁତି ଦେଇ କାରଖାନା ମାଲିକଙ୍କୁ ହତ୍ୟା କରିବା ପାଇଁ ପଠାଉଛନ୍ତି ।

ତା ମୁଣ୍ଡ ଭିତରଟା କ'ଣ ହେଇଗଲା । ସେ ବେଶ୍ ଜାଣି ପାରୁଥିଲା ଯେ ସେ ଯଦି ବର୍ତ୍ତମାନ କିଛି ନ କରେ, ହୁଏତ ଏଇ ଲୋକଟ ମଧ୍ୟ ତା ପରି ଜେଲ୍ ଖଟିବ ଆଉ ପଙ୍କଜ ବାବୁ ପୁଣି ଆଉ କେଉଁ କାରଖାନାରେ ଆନ୍ଦୋଳନ କରିବା ପାଇଁ କାଲି ଏଠାରୁ ଚାଲିଯିବେ । ସେ ଆଗପଛ କିଛି ବିଚାର ନକରି ଗୋଟିଏ ପନିକି ନେଇ ପଙ୍କଜବାବୁଙ୍କୁ ହାଣିଦେଲା । ପାଖରେ ଥିବା ତିନିଜଣ ଲୋକ କିଛି କରିବା ପୂର୍ବରୁ ଦଉଡ ଯାଇ ନିଜେ ପୋଲିସ୍ ଥାନାରେ ଆତ୍ମ ସମର୍ପଣ କଲା............

ଥାନାରୁ ଫେରିଲା ବେଳେ ବିନ୍ଦୁ ଅନ୍ୟମନସ୍କ ହେଇଯାଇ ଥିଲା । ସେ ଭାବୁଥିଲା ସେ ନିଜେ ଏହି ପରିସ୍ଥିତିର ସମ୍ମୁଖୀନ ହେଇଥିଲେ କଣ କରିଥାନ୍ତା ? ହୁଏତ ପୋଲିସ୍‌ରେ ଖବର ଦେଇଥାନ୍ତା । କିନ୍ତୁ ପୋଲିସ୍‌ରେ ଖବର ଦେଇଥିଲେ କଣ ହେଇଥାନ୍ତା । ପଙ୍କଜ ବାବୁ ତ ଖସି ଯାଇଥାନ୍ତେ, ତାଙ୍କର ସମର୍ଥକମାନେ ତା ଉପରେ ନିଶ୍ଚୟ ପ୍ରତିଶୋଧ ନେଇଥାନ୍ତେ । ସେ ହୁଏତ କାରଖାନାର ମାଲିକଙ୍କୁ ଆଗରୁ ସଜାଗ କରି ଦେଇଥାନ୍ତା । କିନ୍ତୁ ସେଇଟା ମଧ୍ୟ ଏତେ ସହଜ କଥା ହେଇ ନଥାନ୍ତା । ରାତିରେ କାରଖାନା ମାଲିକଙ୍କ ଘରକୁ ଯାଇ ତାଙ୍କୁ ଉଠାଇ ତାଙ୍କୁ ଦେଖା କରିବା ଏତେ ସହଜ ନୁହେଁ । ତାଛଡା ତା କରିଥିଲେ ମଧ୍ୟ ତ ପୋଲିସ୍ ତାକୁ ଛାଡ଼ି ନଥାନ୍ତା । ବିନ୍ଦୁ ଭାବି ଦେଖିଲା ସେପରି ଗୋଟିଏ ପରିସ୍ଥିତିରେ ସେ ସବୁ ଦେଖି ମଧ୍ୟ ନଦେଖିଲା ପରି ରହି ଯାଇଥାନ୍ତା । ତାର ଶିକ୍ଷା ଏବଂ ସାମାଜିକତା, ତାଠାରୁ ପ୍ରତିକ୍ରିୟା ପ୍ରକାଶ କରିବାର ଶକ୍ତି ଛଡାଇ ନେଇଛି ।

Digitized by srujanika@gmail.com

ଯାହାହେଉ ଖବରଟାକୁ ଫାଇଲ୍ କରିବାକୁ ପଡ଼ବ । ଖବରଟା ବେଶ୍ ଚାଞ୍ଚଲ୍ୟକର । କାଲିର କାଗଜ ପାଇଁ ହେଡ୍‌ଲାଇନ୍ ମସଲା । ବିଜୁ ପ୍ରେସ୍ ରୁମ୍‌କୁ ଚଲା । ସେଠି ମଧ୍ୟ ଏହି ହତ୍ୟାକାଣ୍ଡ ଉପରେ ଗରଗରମ୍ ଆଲୋଚନା । ଲୋକଟା କାହିଁକି ଏମିତି କଲା ? ଲୋକଟା ତ ଚାକିରୀ ଖଣ୍ଡେ ପାଇ ପାରିଥିଲା । ଶାନ୍ତରେ ରହିପାରିଥାନ୍ତା । ଏବେ ଚଉଦ ବର୍ଷ ଜେଲ୍‌ରେ ରହିବ......।

ବିଜୁ ଭାବୁଥିଲା ଲୋକଟା କାହିଁକି ଏମିତି କଲା ବା ଏଥିରୁ କଣ ପାଇଲା ଏକଥା ବୁଝିବା ପାଇଁ ହୁଏତ ଆମେ ଅଯୋଗ୍ୟ । କାଚ ଘରେ ରହୁଥିବା ଲୋକେ କେବେ ଟେକା ମାରନ୍ତି ନାହିଁ । ପଂଜୁରୀରେ ଉଡୁଥିବା ପକ୍ଷୀ କେବେ ବସନ୍ତକୁ ଅପେକ୍ଷା କରେ ନାହିଁ ।



Digitized by srujanika@gmail.com

# ଅନ୍ଧ

ଅଭୟ ବାବୁ ଅନେକ ଦିନ ହେଲା ଯାହା ଆଶଙ୍କା କରୁଥିଲେ ତାହାହିଁ ସତ ହେଲା । ପ୍ରକୃତରେ ସେ ଦିନକୁ ଦିନ ତାଙ୍କର ଦୃଷ୍ଟି ଶକ୍ତି ହରାଇ ବସୁଛନ୍ତି । ଅନ୍ଧ ହୋଇ ଯାଉଛନ୍ତି । କିନ୍ତୁ ଗତାନୁଗତିକ ଭାବରେ ନୁହେଁ । ସାଧାରଣ ଲୋକ ଯେମିତି ବୟସ ଗଡ଼ିଲେ ଦୃଷ୍ଟି ଶକ୍ତି ହରାଇ ବସେ କି ଚଷମା ପିନ୍ଧେ ତାଙ୍କ କଥା ସେମିତି ନୁହେଁ । ଏକେତ ସେ ବୁଢ଼ାହୋଇ ନାହାନ୍ତି, ଦ୍ୱିତୀୟରେ ସେ କେତେ ଗୁଡ଼ାଏ ଜିନିଷ ବେଶ୍ ଭଲଭାବରେ ଦେଖି ପାରୁଛନ୍ତି । ଅଥଚ ଅନ୍ୟ ଜିନିଷ ଗୁଡ଼ାକ୍ ତାଙ୍କ ଆଖିରେ ପଡ଼ୁନି ।

ପ୍ରାତଃ ଭ୍ରମଣରେ ଗଲାବେଳେ ତାଙ୍କୁ ରାସ୍ତାଘାଟ ଭଲଭାବରେ ଦେଖା ଯାଉନି । ଝାପସା ଝାପସା ଲାଗେ । କିନ୍ତୁ ସିନେମା ପୋଷ୍ଟର, ଅଳଙ୍କାର ଦୋକାନ, କ୍ୟାସିନୋ ଗେଷ୍ଟ ହାଉସ୍ ଇତ୍ୟାଦି ତାଙ୍କୁ ବେଶ୍ ପରିଷ୍କାର ଦେଖାଯାଏ । ରାସ୍ତାରେ ସେ ଶୋଇଥିବା ଭିକାରୀମାନଙ୍କୁ ଝୁଣ୍ଟନ୍ତି । କେତେଥର ପଡ଼ନ୍ତି ମଧ୍ୟ । ସେଇଥି ପାଇଁ ତ ସେ ପ୍ରାତଃ ଭ୍ରମଣ ଅଭ୍ୟାସ ଛାଡ଼ିଲେ ।

ଗତ ବର୍ଷ କାର୍ତ୍ତିକ ମାସ ସୋମବାର ଦିନ ସେ ମନ୍ଦିର ଯାଇ ଦାନ ଧର୍ମ କରିଥିଲେ । କିନ୍ତୁ ସେଦିନ ଅଡୁଆରେ ପଡ଼ିଲେ । ଗାଡ଼ିରୁ ଓହ୍ଲାଇ ମନ୍ଦିର ଆଡେ ଚାଲିଲେ । ରାସ୍ତା କିଛି ଦେଖାଯାଉ ନଥାଏ । ଅତିକଷ୍ଟରେ କୌଣସି ପ୍ରକାରେ ବେଢ଼ା ଭିତରକୁ ପଶିଗଲେ । ତାଙ୍କ ସାଙ୍ଗରେ ଥିବା ପିଅନ, ଡ୍ରାଇଭର ଓ ଦୁଇଜଣ କଣ୍ଟ୍ରାକ୍ଟର କ'ଣ ଭାବିଥିବେ କେଜାଣି ? ହୁଏତ ଭାବିଥିବେ ସାର୍ ଏକଦମ୍ ଭକ୍ତ ବିହ୍ୱଳ ହୋଇ ଯାଇଛନ୍ତି । କି ଭକ୍ତିରେ ସେ ଅନ୍ଧ ହୋଇଯାଇଛନ୍ତି । ଏଣେ ଅଣ୍ଡାଳି ଅଣ୍ଡାଳି ସେ ମନ୍ଦିର ଭିତରେ ପଶି ଯାଉ ଯାଉ ତାଙ୍କୁ ଚାରିଆଡ ଅନ୍ଧାର ଦେଖାଗଲା । ଖାଁ ଖାଁ । ମ'ଲା । ତାଙ୍କ ନିଶ୍ୱାସ ଯେମିତି ରୁନ୍ଧ ହୋଇଗଲା । ସେ ଛାଟିପିଟି ହୋଇ ବାହାରକୁ ପଳାଇ ଆସିଲେ । ବେଢ଼ା ଚାରିପଟେ ବୁଲିଲେ । ମନ୍ଦିର କାନ୍ଥରେ ଥିବା ଅଶ୍ଳୀଳ ମୂର୍ତ୍ତି ଗୁଡ଼ିକ ତାଙ୍କୁ ପରିଷ୍କାର ଦେଖା ଯାଉଥିଲା ।

ସେ ବୁଲିପଡ଼ି ପାଖରେ ଥିବା କଣ୍ଟ୍ରାକ୍ଟର ଦୁଇଜଣଙ୍କୁ ଲକ୍ଷ୍ୟ କରି କହିଲେ—ଆଃ ! କି କଳା······କି ସ୍ଥାପତ୍ୟ······ଆଜିକାଲି ଏସବୁ କାହିଁ ?

Digitized by srujanika@gmail.com

ସେମାନଙ୍କ ଭିତରୁ ଜଣେ କଣ୍ଟ୍ରାକ୍ଟର ଦାନ୍ତ ନିକୁଟି କହିଲା କୁଆଡ଼ୁ ଆସିବ ଆଜ୍ଞା ? ଆପଣମାନେତ ଖାଲି ଟେଣ୍ଡର ମାଗିଲେ । ସେଥିରେ ପୁଣି ଲୋଏଷ୍ଟ ବାଲାଙ୍କୁ ଅର୍ଡ଼ର ଦେଲେ ହେଃ·········ହେଃ······ତା ସାଙ୍ଗକୁ ପୁଣି ପରସେଣ୍ଟେଜ୍" ।

ଅଭୟ ବାବୁ ଠିକ୍ କଲେ ଡ଼ାକ୍ତରଙ୍କୁ ଦେଖାଇବେ । ହେଲେ କୋଉ ଡାକ୍ତର ତାଙ୍କ କଥା ବିଶ୍ୱାସ କରିବ । କିଏ ମାନିବ ଯେ ଏମିତି ଗୋଟିଏ ଆଖି ରୋଗ ଅଛି ବୋଲି । ତାଙ୍କୁ ଅଧା ଜିନିଷ ଦିଶୁଛି ଅଧା ଜିନିଷ ଦିଶୁ ନାହିଁ । କିଏ ଏକଥା ସତ ମଣିବ । ଏମିତି ରୋଗ ଆଉ କାହାକୁ ହବାରତ ସେ ଶୁଣି ନାହାନ୍ତି । ତଥାପି ଅଭୟବାବୁ ଡାକ୍ତରଖାନା ଗଲେ । ଆଖି ଡାକ୍ତର ତାଙ୍କର ଦୂର ସମ୍ପର୍କୀୟ ହେବ । ଆଖି ପରୀକ୍ଷା ଆରମ୍ଭ ହେଲା । ଡାକ୍ତର ଭିନ୍ନ ଭିନ୍ନ କାଚ ଦେଇ ପରଷା କଲେ ।

ଡାକ୍ତର ଝରକାର ପରଦା ଟେକି କହିଲେ 'ବାହାରେ ଖଗ ପଡିଛି, ଦେଖାଯାଉଛି' । ଅଭୟବାବୁ କହିଲେ 'ନା ଖାଲି କ'ଣ ଧଳା ଧଳା ପରଦାଟେ ଭଳିଆ ଦେଖା ଯାଉଛି' । ଡାକ୍ତର ଅଭୟ ବାବୁଙ୍କ ଆଖି ଆଗରେ ଗୋଟିଏ ଟଙ୍କି ଜଳାଇ କହିଲେ 'କଣ କିଛି ଜାଣି ପାରୁଛନ୍ତି' । ଅଭୟବାବୁ ହତାଶ ହୋଇ କହିଲେ 'କାହିଁ ନାହିଁତ ?

ଏଇ ସମୟରେ ଡାକ୍ତରଖାନାର ଗୋଟିଏ ବେହେରା ଆସି ଡାକ୍ତରବାବୁଙ୍କୁ କହିଲେ 'ସାର ଅପରେସନ୍ ଟାଇମ୍ ହୋଇ ଚଲଣି' । ଡାକ୍ତରବାବୁ ପଚାରିଲେ 'ପ୍ରଥମେ କାହା ଅପରେସନ୍ ଅଛି ? ବେହେରା କହିଲା 'ସେଇ ମଫସଲିଆ ବୁଢାର । କାଲି ଯାହାର ପୁତୁର ଆପଣଙ୍କ ବସାକୁ ଯାଇଥିଲା' । ଏହା କହି ସେ ଚୁପ୍ କରି ଡାକ୍ତରଙ୍କ ହାତରେ ଦୁଇଟି ଶହେ ଟଙ୍କିଆ ନୋଟ ଗୁଞ୍ଜି ଦେଇ କହିଲା 'ସକାଳୁ ସକାଳୁ ଦେଇ ଯାଇଛି' ।

ଏକଥା ଅଭୟବାବୁ ପରିଷ୍କାର ଦେଖି ପାରୁଥିଲେ ।

ସେ ଡାକ୍ତର ମୁହଁକୁ ଆଉ ବେହେରା ମୁହଁକୁ ଚାହିଁ ମୁରୁକି ମୁରୁକି ହସିଲେ ।

ଡାକ୍ତରବାବୁ କହିଲେ 'ଆଜ୍ଞା ଆପଣ ସବୁ ଦେଖି ପାରୁଛନ୍ତି ତି ? ଆଉ ମିଛଟାରେ ମତେ ଏତି ଘଣ୍ଟେ କାଳ ଝାଳ ବୁହାଇ ସାରିଲେଣି । ଥଟ୍ଟା ଖେଳିବାକୁ ଆଉ ଯାଗା ମିଳିଲାନି ।'

ସେ ଦିନଠାରୁ ଅଭୟବାବୁ ଆଉ ଡାକ୍ତରଖାନାର ଦୁଆର ମାଡ଼ ନାହାନ୍ତି ।

Digitized by srujanika@gmail.com

ଅଫିସରେ ମଧ୍ୟ ବଡ ହଇରଣ ହୁଅନ୍ତି । କେତେବେଳେ ଝାଟୋଉଥିବା ଚପରାଶିଟାକୁ ଝୁଣ୍ଟନ୍ତି ତ କେତେବେଳେ ନୂଆ ହୋଇ ନିଯୁକ୍ତି ପାଇଥିବା ଷ୍ଟେନୋ ସାଙ୍ଗରେ ଧକ୍କା ହୁଅନ୍ତି । ଅଫିସର ଅଧିକାଂଶ କର୍ମଚାରୀଙ୍କୁ ସେ ଆଦୌ ଦେଖି ପାରନ୍ତି ନାହିଁ । କେବଳ ହେଡକ୍ଲର୍କ ମହାନ୍ତିବାବୁ (ଯିଏ ରାଜସ୍ୱ ମନ୍ତ୍ରୀଙ୍କ ନିଜଲୋକ) ଆଉ ଏମିତି ଏକେତେ ଜଣଙ୍କୁ ସେ ଯାହା ଦେଖନ୍ତି । ଅଫିସ କାମ କରିବା ପାଇଁ ତାଙ୍କୁ ବଡ଼ ହଇରଣ ହେବାକୁ ପଡ଼େ ।

ଏମିତି ଦିନେ ସେ ଅଫିସରେ ବସିଛନ୍ତି ଖବର ଆସିଲା, ମନ୍ତ୍ରୀ ଡକାଇଛନ୍ତି । ଶୀଘ୍ର ଡାକବଙ୍ଗଳାରେ ଦେଖା କରିବାକୁ ହେବ । ଅଭୟବାବୁ କିଛିକ୍ଷଣ ଥକ୍କା ହୋଇ ରହିଗଲେ । ଭାବିଲେ ବୋଧେ ମନ୍ତ୍ରୀଙ୍କ କାନରେ ତାଙ୍କ ରେଗ କଥାଟା ପଡ଼ିଛି । ଚାକିରୀଟା ଗଲା ଜାଣ । ସେ ଥରି ଥରି ଡାକବଙ୍ଗଳାରେ ପହଞ୍ଚିଲେ । ମନ୍ତ୍ରୀଙ୍କ ପାଖରେ ପ୍ରାଇଭେଟ୍ ସେକ୍ରେଟେରୀ, ପି.ଏ. ହୋଇ ତିନି ଚାରିଜଣ ବସିଥାଆନ୍ତି । ନମସ୍କାର ନହେଉଣୁ ମନ୍ତ୍ରୀ ପଚାରିଲେ "ଆପଣ କେତେଦିନ ହେଲା ଏଠି ରହିଲେଣି ?" ଅଭୟବାବୁଙ୍କ ଛାତି ଥରି ଉଠିଲା, ସେ ଭାବିଲେ ବୋଧେ ଟ୍ରାନସଫର ହେଲା, ମାଲକାନଗିରି କି ଫୁଲବାଣୀ କି ଆହୁରି କୁଆଡେ଼ କିଏ କହିବ । ସେ ଥଙ୍ଗେଇ ଥଙ୍ଗେଇ କହିଲେ "ସାର୍ ସ୍ତ୍ରୀ ଦେହ ଭରି ଖରାପ ।" ମନ୍ତ୍ରୀ ହସୁଥାଆନ୍ତି । ଯାତ୍ରାପାଟିଆ କୃଷ୍ଣଙ୍କ ହସ । ମୁରୁକି ମୁରୁକି । ମଦ ମଦ ।

ପି.ଏ. କହିଲେ "ସାର୍ ଅଭୟ ବାବୁଙ୍କ କାମ ଭରିଭଲ । ଆର୍. ଆଣ୍ଡ ବି .ର ସବୁ ଏକଜକ୍ୟୁଟିଭ ଇଞ୍ଜିନିୟରଙ୍କ ଭିତରେ ତାଙ୍କର ସବୁଠାରୁ ବେଶୀ ଖାତିର ।"

ଅଭୟ ବାବୁଙ୍କ ପିଣ୍ଡରେ ପ୍ରାଣ ପଶିଲା । ମନେ ମନେ ଭାବିଲେ ପି.ଏ ଙ୍କ ଝିଅ ବାହାଘରକୁ କଲର ଟିଭି ସେଟ୍ ଟା ପ୍ରେଜେଣ୍ଟ ଦେଇଥିଲେ, ସେଣ୍ଟର ଠିକ୍ ଧରିଛି । ମନ୍ତ୍ରୀଙ୍କ ପାଖରେ ବସିଥିବା ଯୁବନେତା ଜଣେ କହିଲେ "ସେଇଥିପାଇଁ ତ ତାଙ୍କୁ ଏଠିକି ଡକାହୋଇଛି । ସାର୍ ଙ୍କ ଗାଁ ତାଙ୍କ ଏରିଆରେ । ତେଣୁ ସାର୍ ଙ୍କ ଗାଁରେ ଯେଉଁ ଘର ତିଆରି ହେବ ଅଭୟବାବୁ ତାର ପୁରାଦାୟିତ୍ୱ ନେବେ ।"

ଅଭୟ ବାବୁଙ୍କ ଆଖିରୁ ଜୁଳୁଜୁଳୁଆ ପୋକଟେ ବାହାରି ପଡ଼ିଲା । ସେ ଭାବିଲେ ପୁରା ଘରଟେ କରିବାକୁ ପଡ଼ିବ । ମାନେ ତିନି ଚାରି ଲକ୍ଷ ଟଙ୍କାର କାରବାର । ତାଙ୍କୁ କେତେଟା କଣ୍ଟ୍ରାକ୍ଟରଙ୍କ ତଣ୍ଟି ଚିପିବାକୁ ପଡ଼ିବ କେଜାଣି ?

ପି.ଏ କହିଲେ "ବୁଝିଲେ ଅଭୟବାବୁ ! ଘରର ପିଣ୍ଡାଟା ଯେମିତି ମାଟିଠାରୁ ଦଶ ପନ୍ଦର ଫୁଟ ଉପରେ ରହିବ । ଅଭୟବାବୁ ଚମକି ପଡ଼ି କହିଲେ, "କାହିଁକି ଆଜ୍ଞା ? ଆଜିକାଲି କଣ ସେମିତି ଘର କିଏ କରୁଛନ୍ତି ?

Digitized by srujanika@gmail.com

ଏତେବେଳେ ମନ୍ତ୍ରୀ ପାଟି ଫିଟାଇ କହିଲେ "ଇଞ୍ଜିନିୟର ବାବୁ ଭଗବତ ଫାଟେବତ ପଢ଼ିଛନ୍ତ ନା ନାହିଁ ।" ବୋଇଲା—"ତକେ ସର୍ବତ୍ର ଲୀନ ହେବ । ମୋର ନିବାସି ମାତ୍ର ଥିବ ।।" କ'ଣ ବୁଝିଲେଟି ? ଆମ ଅଞ୍ଚଳ ହେଲା ଧୋଇୟା ଅଞ୍ଚଳ । ପ୍ରତି ଦି' ତିନି ବର୍ଷରେ ଥରେ ପାଣି ଗାଁ ଭିତରେ ପଶେ । ମୁଁ ଯଦି ଘରଟା ଉଚ୍ଚା ନ କରିବି ତେବେ ଗାଁ ଲୋକମାନେ ଆପତ୍ତି ବିପତ୍ତିରେ ଆଉ ଆଶ୍ରୟ ନେବେ କେଉଁଠି ?

ଅଭୟବାବୁ କାନ କୁଣ୍ଡେଇ କୁଣ୍ଡେଇ ବାହାରକୁ ଆସିଲେ । ବାହ୍ୟରେ ତାଙ୍କୁ କିଛି ଦେଖାଗଲା ନାହିଁ । ଆଶ୍ଚର୍ଯ୍ୟ କଥା, ଘର ଭିତରେ ତାଙ୍କୁ ସବୁ ପରିଷ୍କାର ଦେଖା ଯାଉଥିଲା । ମନ୍ତ୍ରୀ ଆଉ ତାଙ୍କ ପାଖ ଲୋକମାନଙ୍କୁ ସେ ଭଲକରି ଦେଖି ପାରୁଥିଲେ, ଅଥଚ ତୁଚ୍ଛା ଖରବେଳଟାରେ ତାଙ୍କୁ ଘୋରିଆଡ଼ ଅନ୍ଧାର ଦେଖାଯାଉଛି ?

ଅଭୟବାବୁ ଦେଖିଲେ ଯେ ତାଙ୍କ ଅଫିସର ଷ୍ଟାଫମାନଙ୍କୁ ନବଦଳାଇଲେ ଆଉ ଚଳି ହେବନି । ଯଦି ସେ ସେମାନଙ୍କୁ ଦେଖି ନ ପାରିବେ ତାହେଲେ ତାଙ୍କୁ ନେଇ କାମ କେମିତି ହେବ ? ସେ ଯୋଗାଡ଼ ଯନ୍ତ୍ର କରି ଷ୍ଟାଫମାନଙ୍କୁ ବଦଳେଇବାକୁ ଲାଗିଲେ । ଯେଉଁମାନେ ଯାଙ୍କୁ ଦେଖାଗଲେ କେବଳ ସେମାନଙ୍କୁହିଁ ରଖାଗଲା । କିଛିଦିନ ପରେ ସେ ଜାଣିଲେ ଯେ ବର୍ତ୍ତମାନ ତାଙ୍କ ଅଫିସର ସବୁ ଷ୍ଟାଫ୍‌ମାନଙ୍କୁ ଦେଖି ପାରୁଛନ୍ତି, ଆଉ ତାଙ୍କୁ ମଧ୍ୟ ସମସ୍ତେ ଦେଖି ପାରୁଛନ୍ତି । ଅଫିସ କାମ ସୁରୁଖୁରୁରେ ଚାଲିଲା । ଖାଲି କେତେବେଳେ କେମିତି ଖବରକାଗଜ ବାଲା ତାଙ୍କ ନାଁରେ କି ତାଙ୍କ ଅଫିସ ନାଁରେ ପଦେ ଅଧେ କ'ଣ ଏଣୁତେଣୁ ଲେଖି ପକାଉଥିଲେ ।

ମହାନ୍ତ ବାବୁ ବର୍ତ୍ତମାନ ଅଭୟବାବୁଙ୍କର ଅତି ପ୍ରିୟ ହୋଇ ଯାଇଛନ୍ତି । ତାଙ୍କର ଉପର ମହଲରେ ପରିଚୟ ସାଙ୍ଗକୁ ତାଙ୍କର ମନ୍ତ୍ରଣାରେ ଅଭୟବାବୁ କେତେଥର ଉପକୃତ ହେଲେଣି । ଅଭୟବାବୁ ଯୋଗାଡ଼କରି ତାଙ୍କର ପଦୋନ୍ନତିଟା ବି କରାଇ ନେଲେଣି ।

ଆଖି ରୋଗଟା ହେବା ପୂର୍ବରୁ ଅଭୟବାବୁ ସିନେମା ଦେଖିବାରେ ଭାରି ଝୁଙ୍କ୍ ଥିଲା । ଗୋଟିଏ ହେଲେ ସିନେମା ସେ ଛାଡ଼ୁ ନଥିଲେ । ହେଲେ ଏବେ ସେ ସିନେମା କିଛି ଦେଖି ପାର ନାହାନ୍ତି । ସିନେମା ଗଲେ ସେ ଖାଲି ଅଂଡ଼ାଦ୍‌ ଖାଁ, ପ୍ରେମରେଖା କି ରଣଜିତ୍ ଏଇ କେତେ ଜଣଙ୍କର ଫଟୋ ଯାହା ଦେଖି ପାରୁଛନ୍ତି । ତେଣୁ ସେ ବିରକ୍ତ ହୋଇ ଅଧାରୁ ଉଠି ପଳାଇ ଆସିନ୍ତି । ଏଇ କେତେଦିନ ହେଲା ସେ ଗୋଟିଏ ଭିଡ଼ିଓ ସେଟ୍ କିଣିଛନ୍ତି । ପ୍ରତିଦିନ ରାତିରେ

Digitized by srujanika@gmail.com

ବସି ବ୍ଲୁ ପିକ୍ଚର ଦେଖୁଛନ୍ତି । ଏତେ ଦିନର ସିନେମା ଦେଖିବା ସଉକି, କ'ଣ ଏତେ ସହଜରେ ଛାଡିଦେବେ ?

ଦିନେ ସକାଳୁ ସକାଳୁ ଅଭୟବାବୁ ଖିଅର ହେଉଥାଆନ୍ତି । ଏହି ସମୟରେ ବାହାର ଫାଟକ ଫିଟିବାର ଶବ୍ଦ ହେଲା । ସେ ଝରକା ବାଟେ ଦେଖିଲେ ମହାନ୍ତି ବାବୁ ଆସୁଛନ୍ତି । କିନ୍ତୁ ସେ ବି ଅଣ୍ଡାଳି ଅଣ୍ଡାଳି ବାଟ ଚାଲୁଛନ୍ତି । ତାଙ୍କୁ ଯେମିତି କିଛି ଦେଖା ଯାଉନି । ସେ ବାଟରେ ମାଳି ସାଙ୍ଗରେ ଧକ୍କା ଲାଗିଲେ । କୌଣସି ମତେ ଝୁଣ୍ଟି ଝୁଣ୍ଟି ପାହାଚ ପାଖରେ ଆସି ପହଞ୍ଚିଲେ । ଅଭୟବାବୁ ଆଶ୍ଚର୍ଯ୍ୟ ହୋଇଯାଉଥାଆନ୍ତି । ଆରେ ୟାର ଆଖି କେବେଠୁଁ ଖରାପ ହେଲାଣି ? ମହାନ୍ତି ବାବୁ କିନ୍ତୁ ଅଭୟବାବୁଙ୍କୁ ଦୂରରୁ ଦେଖୁ ଦେଖୁ ଚିହ୍ନି ପକେଇଲେ । ହସି ହସି ନମସ୍କାର ହୋଇ କହିଲେ ସାର୍ ଆପଣ ଅଧା ଖିଅର ହେଇଛନ୍ତି ଯେ ?

ଅଭୟ ବାବୁ ଚମକି ପଡିଲେ । ଆରେ ସେ ମତେ କେମିତି ଦେଖିଲା ? ରେଗଟା ଡେଇଁଲା କି ଆଉ ?



Digitized by srujanika@gmail.com

# ଅସନ୍ତୁଷ୍ଟ

ମ୍ୟାଟ୍ରିକ ପରୀକ୍ଷା ତିନି ଥରରେ ପାଶ୍ କଲାପରେ ବିନାୟକ ଆଉ କେବେ ପଛକୁ ଫେରି ଚାହିଁ ନାହିଁ । ସେ ଯେ ତାପରର ସବୁ ପରୀକ୍ଷାଗୁଡ଼ାକ ଏକାଥରକରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଛି ତା ନୁହେଁ । କିନ୍ତୁ ଜୀବନର ହୁଡଲସ୍ ରେସ୍‌ରେ ସେ ଗୋଟିଏ ପରେ ଗୋଟିଏ ହୁଡଲସ୍ ଅତିକ୍ରମ କରି ଚାଲିଛି ଅନାୟାସରେ, ଅନ୍ୟ ପ୍ରତିଦ୍ୱନ୍ଦୀ ମାନଙ୍କୁ କାହିଁ କେତେ ପଛରେ ପକାଇ ।

ଗଞ୍ଜାମ ଜିଲ୍ଲାର ଅଖ୍ୟାତ ଜାମ୍ବୁପଲ୍ଲୀ ଗାଁର ହରିଜନ ଘରର ପିଲା ବିନାୟକ ବେହେରା । ବାପା ଶଙ୍କର ବେହେରା ଅନ୍ୟର ବାଡ଼ରେ ମୂଲ ଲାଗେ । ମା ମଧ୍ୟ ପାଖ ଆଖର ସବର୍ଣ୍ଣଙ୍କ ଘରେ ହାତ ପାଇଟି କରି ଘରକୁ କିଛି ଆଣେ । ସେଇ କ୍ଷୁଦ୍ର ହରିଜନ ପରିବାରର ବିନାୟକ ଏକମାତ୍ର ସନ୍ତାନ । ବାପାଙ୍କ ଇଚ୍ଛା ପୁଅ ପଢ଼ୁ । ଚାକିରୀ ବାକିରି କରି ନିଜ ପେଟପୋଷୁ । ପରଘରେ ମୂଲ ଲାଗି ପେଟ ପୋଷିବାର ଦୁର୍ଦ୍ଦିନ ତା ଭାଗ୍ୟରେ କେବେ ନଜୁଟୁ ।

ବିନାୟକ ଗାଁ ସ୍କୁଲରେ ପଢ଼ିଲା ଦିନଠୁ ଜାଣି ପାରୁଥିଲା ଯେ ପାଠ ସାଠ ପଢ଼ି ବଡ ଚାକିରୀଟେ ପାଇବା ତା ଦେଇ କାଠିକରପାଠ । ତିନି ଥରରେ ମ୍ୟାଟ୍ରିକ୍ ପାଶ୍ କଲାବେଳକୁ ତାର ବୟସ ଅଠର ଟପିଲାଣି । ତା ସାଙ୍ଗ ମାନେ +୨ ସାରି ବି.ଏ. ରେ ନା ଲେଖାଇଲେଣି । ତେଣୁ ତାକୁ ଆଉ କିଛି ବାଟ ଧରିବାକୁ ହେବ ।

କଲେଜରେ ସ୍ଥାନ ପାଇବାରେ ତା ପାଇଁ ବିଶେଷ ଅସୁବିଧା ହେଲାନି । ହରିଜନଙ୍କ ପାଇଁ ସଂରକ୍ଷିତ ସ୍ଥାନରେ ପ୍ରତିଦ୍ୱନ୍ଦତା କମ୍ । କଲେଜରେ ନାଁ ଲେଖାଇବା ପରେ କ୍ଲାସ ଆଟେଣ୍ଡ କରିବା ସାଙ୍ଗେ ସାଙ୍ଗେ ସେ ଚାରିଆଡେ ଆଖି ବୁଲାଉଥାଏ । ସୁଯୋଗ ଅପେକ୍ଷା କରୁଥାଏ । କଲେଜର ଇଲେକ୍‌ସନ୍ ଆସି ପହଞ୍ଚିଲା । ଆଜିକାଲି କଲେଜ ଇଲେକସନ୍ ଗୁଡ଼ାକ ବିଧାନସଭା ବା ଲୋକସଭାର ଇଲେକ୍‌ସନ୍‌ର ମିନି ଏଡ଼ିସନରେ ପରିଣତ ହେଲାଣି । କଲେଜରେ ପାଠ ଶିକ୍ଷା ଠିକ୍ ଭାବରେ ମିଳୁ ବା ନମିଳୁ, ଜଣେ ଚାହିଁଲେ ରାଜନୀତିରେ ସବୁ ଇଲମ୍ ଅନାୟାସରେ ପାଇ ପାରିବ । ବିନାୟକ ଦେଖିଲା କଲେଜ ନିର୍ବାଚନରେ ତିନିଟା ମୁଖ୍ୟ ରାଜନୈତିକ ଦଳ ଭିତରେ ପ୍ରତିଦ୍ୱନ୍ଦୀତା ହେଉଛି । କଂଗ୍ରେସ୍, ଜନତା ଏବଂ କମ୍ୟୁନିଷ୍ଟ ଦଳ । ସେ ହିସାବ କରି ଦେଖିଲା ତା ପାଇଁ କଂଗ୍ରେସ

Digitized by srujanika@gmail.com

ଦଳରେ ବେଶୀ ଫାଇଦା । କାରଣ କଲେଜ ନିର୍ବାଚନର ଫଳାଫଳ ଯାହାହେଉ, କିନ୍ତୁ ଏମାନଙ୍କ ସହିତ ଜଣାଶୁଣା ହେଇଗଲେ ଛାତ୍ର କଂଗ୍ରେସରେ ମିଶିଯାଇ ହେବ ।

ସେ କଂଗ୍ରେସ ଦଳର ସମର୍ଥନରେ ପ୍ରତିଦ୍ୱନ୍ଦୀତା କରୁଥିବା ପାର୍ଥୀମାନଙ୍କ ଦଳରେ ଯୋଗ ଦେଲା । ରାତି ଅନିଦ୍ରା ହେଲା, କାନ୍ଥରେ ପୋଷ୍ଟର ମାରିଲା, ପୁର୍ଥିଙ୍ଗ କାର୍ଡ ବାଣ୍ଟିଲା, ନେତାମାନଙ୍କ ପଛେ ପଛେ ଘର ଘର ବୁଲିଲା ।

ନିର୍ବାଚନ ସରିଲା । ତା ଦଳର କିଛି ପାର୍ଥୀ ଜିତିଲେ କିଛି ପାର୍ଥୀ ହାରିଲେ, କିନ୍ତୁ ବିନାୟକ ଛାତ୍ର କଂଗ୍ରେସର ଜିଲ୍ଲାସ୍ତରୀୟ କର୍ମକର୍ତ୍ତାମାନଙ୍କ ସହିତ ପରିଚିତ ହେଇଗଲା । ସେମାନଙ୍କ ଅନୁରୋଧରେ ସେ ଜିଲ୍ଲା ଛାତ୍ର କଂଗ୍ରେସରେ ତରୁଣ ସଭ୍ୟ ଭାବରେ ସାମିଲ ହେଇଗଲା । ଏବେ ତାର ବେଶୀ ସମୟ ବିତେ ଜିଲ୍ଲା କଂଗ୍ରେସ ଅଫିସରେ । କଲେଜକୁ ପ୍ରତିଦିନ ଯାଏ ଯଦିଓ, କ୍ଲାସ ଆଟେଣ୍ଡ କରିବାକୁ ନୁହେଁ, ଫିଲ୍ଡ କ୍ରିଏଟ କରିବାକୁ..... ...

ଦୁଇବର୍ଷ ପରେ ପରୀକ୍ଷା ଆସିଲା, ବିନାୟକ ପରୀକ୍ଷାରେ ବସିଲା । ଫେଲ୍ ହେଲା । ପୁଣିଥରେ କଲେଜରେ ନାଁ ଲେଖାଇଲା । କାରଣ ଛାତ୍ର କଂଗ୍ରେସରେ ରହିବା ପାଇଁ ଛାତ୍ର ହେଇଥିବା ଆବଶ୍ୟକ, କଲେଜରେ ନାଁ ଥିବା ଦରକାର ।

ପାର୍ଟି ଅଫିସରେ କିନ୍ତୁ ବିନାୟକର ଛାଟ୍‌ପିଟ ବଢ଼ିବାରେ ଲାଗିଛି । ଦିନ ନାହିଁ ରାତି ନାହିଁ ପାର୍ଟି କାମରେ । ସେଇଠି ଖଣ୍ଡିଏ ଖଟିଆ ପଡ଼ିଥାଏ, ରାତିରେ ଘଡ଼ିଏ ସେଇଠି ଶୋଇପଡେ ତା ଟ୍ରଙ୍କ ଖଣ୍ଡକ ସେଇ ଖଟିଆ ତଳେ ପଡ଼ିଥାଏ । ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଆସିଲେ ବିନାୟକକୁ ଫୁରୁସତ୍ ମିଳେନି । କୋଉଠି ଫୁଲ ତୋଡ଼ା ଦିଆ ହେବ, କୋଉଠି ତୋରଣ ତିଆରି ହେବ, କୋଉଠି ମିଟିଂଗ ହେବ, ମାଇକ୍ କୋଉଠୁ ଆସିବ ସବୁ ତା ଜିମା । ତାଛଡ଼ା ବଡ଼ ବଡ଼ ମିଟିଙ୍ଗରେ ଲୋକ କୋଉଠୁ ବୁହାହେଇ ଟ୍ରକ୍‌ରେ ଆସିବେ, ସେମାନଙ୍କ ପାଇଁ ଡାଲମା ଭାତର ଆୟୋଜନ ସବୁ ବିନାୟକ ଉପରେ । ଦଳର ବଡ ବଡ଼ ନେତାଙ୍କର ନଜର ମଧ୍ୟ ତା ଉପରେ ପଡ଼ଲାଣି । ପିଲଟା କାମିକା ହୁସିଆର, ଦାୟିତ୍ୱରେ ଦେଲେ ନିଧଡ଼କରେ ରହିହେବ । ବିନାୟକ ପଢ଼ା ଖର୍ଚ୍ଚ ଆଉ ବାପାମାଙ୍କୁ ଉଠାଇବାକୁ ପଡେ ନାହିଁ । ଓଲଟି ସେ ମାସକୁ ମାସ ଶହେ ଦୁଇଶହ ଗାଁକୁ ପଠେଇ ଦିଏ ।

ଗାଁରେ ମଧ୍ୟ ତାର କଦର୍ ବଢ଼ିଲାଣି । ଗାଁର ଲୋକଙ୍କୁ ଥରେ ଅଧେ ଟ୍ରକ୍‌ରେ ବସେଇ ବ୍ରହ୍ମପୁର ବୁଲାଇ ଆଣିଲାଣି । ଥରେ ଗୋଟିଏ ବସ୍‌ରେ ଗାଁ ବାଲାଙ୍କୁ ଭୁବନେଶ୍ୱର ନେଇଯାଇଥିଲା । ମିଟିଙ୍ଗ ଶୁଣିଲେ । ଖାଇବା ପିଇବା ସବୁ

Digitized by srujanika@gmail.com

ମାଗଣା । ଫେରିଲା ବେଳେ ଲିଙ୍ଗରାଜ ମନ୍ଦିର ବି ଦର୍ଶନ କରାଇ ଦେଲା । ଛୋଟିଆ ମୋଟିଆ କାମ ମଧ୍ୟ ତା ଜରିଆରେ ହେଇଯାଉଛି । ଥାନା ଅଫିସର, ବି.ଡ.ଓ. ବାବୁ, ଚେୟାରମ୍ୟାନ ବାବୁ ସମସ୍ତେ ତାକୁ ମାନନ୍ତି । ଗଳମାତ୍ରେ ଚଉକିଟେ ବଢେଇ ଦିଅନ୍ତି ବସିବା ପାଇଁ । ଗାଁରେ ସେ ଆଉ ବିନା କି ବିନାୟକ ହେଇ ନାହିଁ, ସମସ୍ତେ ଡାକୁଛନ୍ତି ବିନାୟକ ବାବୁ ।

ବିନାୟକ ଦେଖିଲା ନିଜର ଖୋରାକ ପାଇଁ କିଛି ଗୋଟିଏ କରିବାକୁ ପଡ଼ିବ । ଖାଲି ପାର୍ଟି ଉପରେ ନିର୍ଭର କଲେତ ଚଳିବନି । ତା ଛଡ଼ା ଭଲ ଅଛି ମନ୍ଦ ଅଛି । ତେଣୁ ସେ କୁହା କୁହି କରି ମାଛ ଡାଆଁକ ଯୋଗାଇବାର ଆରମ୍ଭ କଲା । ଫିସରିଜ୍ ବିଭାଗର ମନ୍ତ୍ରୀ ତାଙ୍କ ଜିଲ୍ଲାର । ଓର ଉଣ୍ଡି ଦିନେ ଗଡିରେ ତାଙ୍କ କାନରେ କଥାଟା ପକାଇଲା । ମନ୍ତ୍ରୀ ମହୋଦୟ ବିନାୟକର କାର୍ତ୍ତି ଜାଣନ୍ତି । ମୁଣ୍ଡ ଉପରେ ନିର୍ବାଚନ । ଟୋକାକୁ ହାତ ପାହାନ୍ତାରେ ରଖିଲେ ଯାଏ । ସାଙ୍ଗେ ସାଙ୍ଗେ ହେଡ଼ୁଟି ଡାଇରେକ୍ଟର ଫିସରିଜ୍‌ଙ୍କୁ ଫୋନ ହେଲା । ଯାହା ମାଛ ଡାଆଁକ କିଣା ହେବ ସବୁ ବିନାୟକ ବାବୁଙ୍କ କମ୍ପାନୀରୁ କିଣାହେବ । ବିନାୟକ ବାବୁଙ୍କ ବେଟ୍ ଦି ପଇସା ରୋଜଗାର ହେଲା ।

ଇଲେକ୍‌ସନ ପାଖ ହେବାରୁ ପାର୍ଟି ଅଫିସର ବାତାବରଣ ସରଗରମ ହେବାକୁ ଲାଗିଲା । ଦଳବଦଳ, ଟିକେଟ ବଣ୍ଟା, କାମ୍ପେନିଙ୍ଗ୍ ପ୍ଲାନ, କେତେ କଣ । ବିନାୟକର ନିର୍ବାଚନ ମଣ୍ଡଳିର ଏମ ଏଲ ଏ, ଗୁଣନିଧି ବେହେରଙ୍କର ଜିଲ୍ଲା କଂଗ୍ରେସ ପ୍ରେସିଡେଣ୍ଟଙ୍କ ସାଙ୍ଗରେ ଆଗରୁ ପଡ଼୍ ନଥିଲା । ସେ ଓର ଉଣ୍ଡି ଥିଲେ, ଠିକ୍ ଏଇ ସମୟରେ ଜନତା ଦଳରେ ଯୋଗଦେଲେ । ପାର୍ଟିରେ ଘୋର ସଂକଟ । ଗୁଣ ବାବୁଙ୍କ ଜାଗାରେ ଟିକଟ କାହାକୁ ଦିଆଯିବ । ତୋବିନ୍ଦପୁର ପୁଣି ସଂରକ୍ଷିତ ଆସନ । ଆଉ କେହି ଟାଣୁଆ ନେତା । ନଜରରେ ପଡ଼ୁ ନାହାନ୍ତି । ବୈଠକରେ ଏ ବିଷୟରେ ଆଲୋଚନା ହେଉ ହେଉ ଜଣେ କିଏ କହିଲା ଆମ ବିନାୟକଙ୍କୁ ଏଥର ଟିକଟ ଦିଆଯାଉ । ଚରି ପାଞ୍ଚ ବର୍ଷ ହେଲା ପାର୍ଟି ପାଇଁ ବହୁତ କାମ କଲାଣି । ତାଙ୍କ ଅଞ୍ଚଳରେ ମଧ୍ୟ ଲୋକେ ତାଙ୍କୁ ଜାଣନ୍ତି । ତାଙ୍କୁ ଗୋଟିଏ ସୁଯୋଗ ଦିଆଯାଉ ।

ସେଇଆ ହେଲା । ବିନାୟକ ଖଦି ଟ୍ରାଉଜର କୁର୍ତ୍ତା ପିନ୍ଧି ଯୋଡହସ୍ତ ହେଇ ଖୋଲା ଜିପ୍‌ରେ ବୁଲି ବୁଲି ଭୋଟ୍ ଭିକ୍ଷା କଲା । ଲୋକେ ଦେଖିଲେ ଟୋକାଟା କାମିକା । ଭଲମନ୍ଦରେ ପଛରେ ଠିଆ ହେଉଛି । ଥରେ ସୁଯୋଗ ଦିଆଯାଉ । ଗୁଣବାବୁ ଏତେଥର ଜିଣି କରି କଣଟା ଓଲଟାଇ ପକାଇଛି କି ?

ବିନାୟକ ବାବୁ ଏମ ଏଲ ଏ ହେଲେ । ଖବରକାଗଜ ଜରିଆରେ ନିର୍ବାଚନ ମଣ୍ଡଳିର ସର୍ବସାଧାରଣଙ୍କୁ କୃତଜ୍ଞତା ଜଣାଇ ଭୁବନେଶ୍ୱର ଗଲେ.........

Digitized by srujanika@gmail.com

ଯା ଭିତରେ ଦଶ ବର୍ଷ ବିତିଗଲାଣି ।

ବିନାୟକ ବାବୁ ଆଗର ସେଇ ବିନାୟକ ହୋଇ ନାହାନ୍ତି । ସେ ଲଗାତର ତିନୋଟି ନିର୍ବାଚନରେ ନିଜ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଛନ୍ତି । ବର୍ତ୍ତମାନ ସେ ଗଞ୍ଜାମ ଜିଲ୍ଲା କଂଗ୍ରେସ ଦଳର ଜଣେ ଟାଣୁଆ ନେତା । ତପସିଲଭୁକ୍ତ ଜାତିର ହୋଇଥିବାରୁ ବିଧାନସଭାର ଦୁଇଟି କମିଟୀରେ ମଧ୍ୟ ସେ ମେମ୍ବର ହୋଇଛନ୍ତି । ନିଖିଳ ଉତ୍କଳ ଦଳିତ ମହା-ସଙ୍ଘର ସେ ବର୍ତ୍ତମାନ ସଭାପତି ।

ଗତ ନିର୍ବାଚନ ପ୍ରଚାର ବେଳେ ତାଙ୍କର ଜଣେ ସ୍କୁଲ ସମୟର ସାଙ୍ଗ ସହିତ ଦେଖା ହୋଇଥିଲା । ସେ ତାଙ୍କ କ୍ଲାସରେ ଫାଷ୍ଟ ହେଉଥିଲା । ଏବେ ସେ ଓ.ଏ.ଏସ ପାଇ ବି.ଡ.ଓ ହୋଇଛି । ସେ ବିନାୟକ ବାବୁଙ୍କୁ ଦେଖି ଦୂରରୁ ଜୁହାରଟିଏ ପକାଇ ନିଜର ପରିଚୟ ଦେଲେ । ବିନାୟକ ବାବୁ ଚିହ୍ନିପାରି କୁଶଳ ଜିଜ୍ଞାସା କରନ୍ତେ ସେ ହଁ ଏକରକମ ଚଳିଛିରେ ଉତ୍ତର ସମାପ୍ତ କରି ପଚାରି ଦେଲେ "କଣ ଭାଇ, ଏଥର ମନ୍ତ୍ରୀଟିଏ ହେଉଛନ୍ତ ତ ? ବିନାୟକ ବାବୁ କହିଲେ "ନାଇଁ ହୋ, ତହୁଁ ବଳି ତହୁଁ ବଳି ନେତା ଅଛନ୍ତି, ଆଉ ଆମକୁ କିଏ ପଚାରୁଛି ।"

ବନ୍ଧୁ ଜଣକ କହିଲେ "ଆମ ଜିଲ୍ଲାରେ ସେମିତି ଟାଣୁଆ ନେତା ଆଉ କାହାନ୍ତି । ତାଛଡ଼ା ହରିଜନ ନେତା ହିସାବରେ ତ ଆପଣଙ୍କ ଚାନସ୍ ବହୁତ ଭଲ । ଆପଣ ତିନି ଥରକରେ ମ୍ୟାଟ୍ରିକ୍ ପାଶ୍ କରିଥିଲେ, ଦେଖିବେ ତୃତୀୟଥର ଏମ୍.ଏଲ୍.ଏ ହେଲେ ନିଶ୍ଚୟ ମନ୍ତ୍ରୀ ହେବେ ।"

ଏଇ କଥାଟା ବିନାୟକ ବାବୁଙ୍କ ମନରେ ରହିଯାଇଥିଲା । ନିର୍ବାଚନ ଫଳ ବାହାରିବାରୁ ତାଙ୍କର ଆଶା ଆହୁରି ବଢ଼ିଗଲା । ଗଞ୍ଜାମ ଜିଲ୍ଲାରେ ତାଙ୍କ ପାର୍ଟିରୁ ନିର୍ବାଚିତ ହୋଇଥିବା ପାର୍ଥୀମାନଙ୍କ ଭିତରେ ସେ ହେଲେ ସବୁଠାରୁ ପୁରୁଣା । ଅନ୍ୟମାନଙ୍କ ଭିତରୁ କେହି ତାଙ୍କ ପରି ଲଗାତର ତିନୋଟି ନିର୍ବାଚନ ଜିତି ନାହାଁନ୍ତି । ସେ ମନ୍ତ୍ରୀମଣ୍ଡଳର ନାମ ତାଲିକାକୁ ଅପେକ୍ଷା କରି ରହିଲେ । ଆଶା ଏଥର ନିଶ୍ଚୟ ତାଙ୍କୁ ଡାକରା ଆସିବ ।

କିନ୍ତୁ ସେ ହତାଶ ହେଲେ । ମନ୍ତ୍ରୀମଣ୍ଡଳରେ ତାଙ୍କୁ ନୁହେଁ ତାଙ୍କ ଜିଲ୍ଲାର ଅକ୍ଷୟ ମହାପାତ୍ରଙ୍କୁ ନିଆଗଲା । ସେ ପାର୍ଟିର ଅନ୍ୟ ବନ୍ଧୁମାନଙ୍କୁ ନିଜ ଅସନ୍ତୋଷ ଜଣାଇଲେ ।

"ଦେଖହେ, ପାଠ ପଢ଼ା ଛାଡ଼, ଦିନ ନାହିଁ ରାତି ନାହିଁ ପାର୍ଟି କାମରେ ଲାଗିଲୁ ଆଉ ଏ କାଲିକାର ଟୋକା ଆସି ମନ୍ତ୍ରୀ ହୋଇଗଲା ।

Digitized by srujanika@gmail.com

ସେ ଦେଖିଲେ କେବଳ ସେ ନୁହଁନ୍ତି ଓଡ଼ିଶାର ଭିନ୍ନ ଭିନ୍ନ ଜିଲ୍ଲାରେ ତାଙ୍କପରି ଅନେକ ଅସନ୍ତୁଷ୍ଟ ବିଧାୟକ ଅଛନ୍ତି । ସେମାନେ ପରସ୍ପର ସହିତ ପରିଚିତ ହେବାକୁ ଲାଗିଲେ । ଏକାଠି ବସାଉଠା କଲେ । ମନ୍ତ୍ରୀମଣ୍ଡଳରେ ସ୍ଥାନ ଦିଆ ନଗଲେ ହାଇକମାଣ୍ଡଙ୍କୁ ଲେଖିବେ ବୋଲି ଧମକାଉଥଲେ ।

ତାଙ୍କୁ ବୁଝାଇ ଦିଆଗଲା ମନ୍ତ୍ରୀମଣ୍ଡଳ ସଂପ୍ରସାରଣ ହେଲେ ତାଙ୍କୁ ନିଆଯିବ । ଆଜିକାଲି ହେଇ ଦୁଇବର୍ଷ ବିତିଗଲା । କିନ୍ତୁ ମନ୍ତ୍ରୀମଣ୍ଡଳ ସଂପ୍ରସାରଣ କରଗଲା ନାହିଁ । ଏଥର ଅସନ୍ତୁଷ୍ଟ ଗୋଷ୍ଠୀ ଠିକ୍ କଲେ ଆଉ ଚୁପ୍ ହୋଇ ବସି ରହିଲେ ଚଳିବ ନାହିଁ । ଆରମ୍ଭ ହେଲା ଦସ୍ତଖତ ସଂଗ୍ରହ । ଦିଲ୍ଲୀ ଗଲା । ଖବର କାଗଜରେ ବିବୃତ୍ତି । ଶୁଣାଗଲା ଏଥର ହାଇକମାଣ୍ଡ ରାଗିଲେଣି । ମୁଖ୍ୟମନ୍ତ୍ରୀ ପଦରୁ ରମାନାଥ ପଟ୍ଟନାୟକ ତଡ଼ା ଖାଇବେ । ଅସନ୍ତୁଷ୍ଟ ଗୋଷ୍ଠୀରୁ ଜଣେ ମୁଖ୍ୟମନ୍ତ୍ରୀ ହେବେ । ବିନାୟକ ବାବୁଙ୍କ ରାତିରେ ଆଉ ଭଲ ନିଦ ହେଉନି । ଆଉ କେତେ ଦିନ ? ମନ୍ତ୍ରୀ ହେଲେ କୋଉ ବିଭାଗ ମିଳିବ ?

ଏମିତି ବର୍ଷେ ବିତିଗଲା । କିନ୍ତୁ ପରିବର୍ତ୍ତନ ହେଲାନାହିଁ । ବିନାୟକ ବାବୁ ଯେଉଁ ଅସନ୍ତୁଷ୍ଟକୁ ସେଇ ଅସନ୍ତୁଷ୍ଟ ରହିଗଲେ । ଦିନେ ଖବର ପାଇଲେ ତାଙ୍କ କମ୍ପାନୀର ମାଛ ଜାଆଁଳ କିଣିବା ପାଇଁ ଫିସରିଜ୍ ଡପାର୍ଟମେଣ୍ଟ ମନା କରି ଦେଇଛି ।

ସେ ଭିଷଣ ଖପ୍ପା ହେଲେ । ଦୌଡ଼ଲେ ବ୍ରହ୍ମପୁର । ଫିସରିଜ୍‌ର ଡେପୁଟି ଡାଇରେକ୍ଟର କହିଲେ "କଣ କରିବୁ ସାର୍ ନିଜେ ମୁଖ୍ୟମନ୍ତ୍ରୀ ଫୋନରେ ମନା କରିଛନ୍ତି । ନହେଲେ କଣ ଆପଣଙ୍କ କାମ ଅଟକି ଥାଆନ୍ତା ?

ଏଣେ ଗାଁକୁ ଯାଇ ବିନାୟକ ବାବୁ ଶୁଣିଲେ ଯେ ଗାଁଠୁ ଗୋବିନ୍ଦପୁର ମଝିରେ ଚାଲିଥିବା ତାଙ୍କର ଗ୍ରେରେଟି ଯାକ ମାଟାଡୋର ଟ୍ରାଫିକ୍ ପୋଲିସ୍ ସିଜ କରି ଦେଇଛନ୍ତି ।

ପୁଣି ଗୋବିନ୍ଦ ପୁରରେ ଶଳା ନାଁରେ ଚାଲିଥିବା ମଦ ଦୋକାନଟା ମଧ୍ୟ ଏକ୍ସାଇଜ୍ ଡ଼ିପାର୍ଟମେଣ୍ଟ ବାଲା ସିଜ୍ କରିନେଇଛନ୍ତି ।

ତାଙ୍କ ପାଦ ତଳୁ ଭୂଇଁ ଖସି ଗଲା ଯେମିତି । ସେ ଭାବିଲେ ମନ୍ତ୍ରୀ ତ ହୋଇ ପାରିଲେନି, ଆରଥରକୁ ଏମ.ଏଲ.ଏ ହେବା ପାଇଁ ମଧ୍ୟ ତାଙ୍କର ରାସ୍ତା ସବୁ ବନ୍ଦ ହେଇଯାଉଛି ।

ରାତାରାତି ଦୌଡ଼ିଲେ ଭୁବନେଶ୍ୱର । ରମାନାଥ ବାବୁ ବସାରେ ଥାଆନ୍ତି । ତାଙ୍କ ଚାରିପାଖରେ ତାଙ୍କ ଅନୁଗତ ଦଳୀୟ କର୍ମୀମାନେ । ହୁଁ ହାଁ ହେଇ ବାହ

Digitized by srujanika@gmail.com

କାହ ରୁମ୍ ଭିତରକୁ ପଶି ଆସିଲେ ବିନାୟକ ବାବୁ । ସମସ୍ତେ ଅବାକ୍ । ଅସନ୍ତୁଷ୍ଟ ଗୋଷ୍ଠୀର ବିନାୟକ କେବେହେଲେ ଏଠି ପୁଣି ଏତେ ଘଟିବେ ।

ବିନାୟକ ବାବୁଙ୍କର ସେ ଆଡକୁ ନିଘା ନାହିଁ । ସିଧାସାଇ ରମାନାଥ ବାବୁଙ୍କ ଗୋଡ ଧରି ପଡ଼ଗଲେ । କାହ କାହ ଖାଲି ଗୋଟିଏ ବାକ୍ୟ କହୁଥାନ୍ତି ।

"ସାର୍ ମତେ ଆଶୀର୍ବାଦ କରନ୍ତୁ । ନହେଲେ ଏଠୁ ଉଠିବିନି "

ରମାନାଥ ବାବୁଙ୍କ ମୁହଁରେ ରମାନନ୍ଦ ସାଗରଙ୍କ ରାମାୟଣ ସିରିୟାଲର ରାମଙ୍କ ମୁହଁର ହସ ।

"କଣ ବିନାୟକ, ଏତେବେଳେ ବୁଝିଲଟି ? ମୁଁ ଆଗରୁ କହୁଛି ତମର ସୁବିଧା ଅସୁବିଧା ମତେ କୁହ, ତମେତ ଶୁଣିଲନି, ଖାଲି ପ୍ରେସ୍ ବାଲାଙ୍କ ପାଖକୁ ଦଉଡଲ ।"

ଏବେ ବିନାୟକ ବାବୁ ଆଉ ଅସନ୍ତୁଷ୍ଟଙ୍କ ଗୋଷ୍ଠୀରେ ନାହାନ୍ତି । ଗରି ଛୁଁ କଣ ନିଆଁ ଗିଳାଙ୍କୁ ଛାଡ଼ଦେଲେ ସେ ଗୋଷ୍ଠୀରେ ଆଉ କେହି ନାହାନ୍ତି ।

ଏବେ ଦିନେ ବିନାୟକ ବାବୁଙ୍କୁ ମୁଖ୍ୟମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟେରୀଙ୍କ ପାଖରେ ଦେଖିବାକୁ ମିଳିଲା । ସେ ବଡ ଉତ୍ତେଜିତ ହୋଇ କହୁଥାନ୍ତି ।

"ଆମେ ଅସନ୍ତୁଷ୍ଟ ଥିଲାବେଳେ କଥାଟେ କହିଲେ ରହୁଥିଲା, ହେଲେ ଏବେ ଅନୁଗତ ହେଲାଦିନୁ ଛ ମାସ ହେଲା ଦଉଡଲିଣି କିନ୍ତୁ ଆମ ବ୍ଳକର ଗ୍ରାମ .ପଞ୍ଚାୟତ ଅଫିସରଙ୍କ ବଦଳିଟା ବି ହୋଇ ପାରୁନି ।"



# ସରଳ କର

ତା ଭଲ ନା'ଟା ହେଲା ଶରତ କୁମାର କର । ଚଣ୍ଡିଢରେ ସିଏ ଧୁରନ୍ଧର । ମାଥ୍‌ମେଟିକସ୍‌ ଅପ୍‌ସନାଲ କୁହ, କମ୍ପଲ୍‌ସରି କୁହ, ସବୁଥିରେ ତାର ହାଇଏଷ୍ଟ ମାର୍କ । କିଏ ତାଙ୍କୁ କମ୍ପ୍ୟୁଟର ଡ଼ାକେ ତ କିଏ ଡ଼ାକେ ଶକୁନ୍ତଳା ଦେବୀ । ଅଙ୍କ ସାର୍‌ ଲେଙ୍କାବାବୁ କିନ୍ତୁ ତା ନାଁ ଦେଇଥାନ୍ତି ସରଳ କର । ପ୍ରକୃତରେ ସିଏ ଅଙ୍କ ପିରିୟଡରେ ଆମକୁ ବହୁତ ଜଟିଳ ବିପଦରୁ ରକ୍ଷା କରି ଦିଏ । ସାର୍‌ ଆମ ଆଡ଼କୁ ପ୍ରଶ୍ନ ପଚାରିଲା ବେଳେ ସିଏ ପାଖରେ ବସି ପ୍ରମ୍ପ୍‌ଟିଙ୍ଗ କରିଦିଏ ।

କ୍ଲାସ୍‌ ବାହାରେ କିନ୍ତୁ ସିଏ ଆମକୁ ବଡ଼ ଜଟିଳ ପରିସ୍ଥିତିରେ ପକାଏ । ତାର ଟିଙ୍ଗ୍‌ଲୁକିଆ, ଏକଶିଙ୍ଗଆ ପ୍ରକୃତି ଯୋଗୁ ଆମେ ସବୁ ଖାଲି ହଇରାଣରେ ପଡ଼ୁ । ଚନ୍ଦର ଜଳଖିଆ ଦୋକାନଟା ଆମର ଖଟି । ଏଠି ସବୁଦିନେ ଆମର ଗୋଟିଏ ଛୋଟକାଟିଆ ମିଟିଙ୍ଗ୍‌ ବସେ । ସରଳ କର ବି ବେଳେ ବେଳେ ଏଠିକୁ ଆସେ । ଦିନେ ବସି ଆମେ ଗପକରୁଥାଉ ଜଣେ ବାବାଜି ଆସି ପହଞ୍ଚିଲେ । ହିନ୍ଦୀରେ କଥା କହୁଥାନ୍ତି । ସେ ହରଦ୍ୱାରରେ ଥାଆନ୍ତି, ଜଗନ୍ନାଥ ଦର୍ଶନ ପାଇଁ ପୁରୀ ଆସିଥିଲେ । ଲିଙ୍ଗରାଜ ମନ୍ଦିରକୁ ଆସି ଏଠି ପହଞ୍ଚିଛନ୍ତି । ଅତୀତ ଭବିଷ୍ୟତ କଥା କହୁଥାନ୍ତି । ଆମ ଭିତରୁ କେତେ ଜଣ ତାଙ୍କୁ ହାତ ଦେଖାଉଥାଉ । କିଏ କିଏ ପ୍ରଶ୍ନ ପଚାରୁଥାନ୍ତି । ସରଳ କର ଥିଲା ପଚାରିଲା ଆଜ୍ଞା, କହିପାରିବେ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ କିଏ ? ବାବା ଅଳ୍ପହସି କହିଲେ କାହିଁକି ? ଆମ ଜାନକୀ ବାବୁ, ଜାନକୀବଲ୍ଲଭ ପଟ୍ଟନାୟକ । ସେଠୁ ସରଳ କର ପଚାରିଲା ଆଜ୍ଞା କହିଲେ, ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ କିଏ ? ବାବା ବିରକ୍ତ ହେଲେ । କହିଲେ ମୋର ସେମାନଙ୍କ ପାଖରେ କ'ଣ କାମ । ଆମେ ବାବା ଲୋକ ଆମ ମୁଖ୍ୟମନ୍ତ୍ରୀ ହେଲେ ପତିତପାବନ ଜଗନ୍ନାଥ । ସରଳ କର ଫଁକିନା ଉଠିଲା । କହିଲା ଏଇଟା ଭଣ୍ଡ ବାବାଜିଟାଏ । ଦୁଇ ଦିନ ହେଲା ଓଡ଼ିଶା ଆସି ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ନାଁ ଘୋଷିସାରିଲାଣି, ତା' ଘର ହରଦ୍ୱାର, କିନ୍ତୁ ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀଙ୍କର ନାଁ ଜାଣି ନାହିଁ । ଯାକୁ ପୋଲିସ୍‌ରେ ଦିଅ । ବାବା ଏକଥା ଶୁଣି ରାଗିମାଗି ମୁହେଡ଼ । ଇଏ ନିଆଁଗିଳା ଏକଜିଦିଆକୁ, ବାବା ପ୍ରଚଣ୍ଡ ରାଗୀ ! ଲାଗିଗଲା ହୋନାଲ୍‌ ମୋନାଲ୍‌ । ଆମେ ମଝିରେ ପଶି ନ ଥିଲେ ହାତାହାତି ହୋଇଯାଇଥାନ୍ତେ ।

Digitized by srujanika@gmail.com

ଆଉ ଥରେ ସରଳ କରକୁ ନେଇ ମୁଁ ଆର୍. ଟି ଓ ଅଫିସ୍ ଯାଇଥିଲି ସ୍କୁଟର ଡ୍ରାଇଭିଙ୍ଗ୍ 'ଲାଇସେନସ୍ ପାଇଁ । କିରାଣୀ ଅଶିଶ ଟଙ୍କା ଘୁସ ମାଗିଲା । ମୁଁ ତାକୁ ଠେଲାଠେଲି କରି କୋଉଏ କି ପରିଶିରେ ରାଜି କରେଇଥାନ୍ତି, କିନ୍ତୁ ସରଳ କର ଷଣ୍ ପୁରେଇଲା । କହିଲା "କିନ୍ତୋ ଟଙ୍କା କ'ଣ ? ଡ୍ରାଇଭିଙ୍ଗ୍ ଟେଷ୍ଟ ନିଅ ଲାଇସେନସ୍ ଦିଅ ? ତାପରେ ଆରମ୍ଭ କରିଦେଲା ଗାଳି । ଟ୍ରାନସପୋର୍ଟ ମିନିଷ୍ଟରଙ୍କଠାରୁ ଆରମ୍ଭ କରି ଆର ଟି ଓ ଅଫିସ୍ ପିଅନ ପର୍ଯ୍ୟନ୍ତ । ଅଫିସବାଲା ଆମକୁ ବାହାରକୁ ବାହାର କରିଦେଲେ । ମୁଁ ପଛକୁ ଫେରି ତାଙ୍କୁ ବୁଝାଇବାକୁ ଯାଉଛି ସରଳ କର ମୋ ହାତ ଧରି ଟାଣି ନେଇଗଲା ପାଖ ପୋଷ୍ଟ ଅଫିସକୁ । ଗୋଟିଏ ଇନ୍ଲାଣ୍ଡ କିଣି ଲେଖି ଗ୍ଲିଲା ଟୁ, ଦି ଏଡଟର ସମାଜ, ମହାଶୟ......

ଭୟ ବୋଲି ଚୋଟିଏ ଜିନିଷ ତା ପାଖରେ ନଥିଲା କି ସିଏ କାହାକୁ ଡରୁ ନଥିଲା । ଥରେ ଆମ ସ୍କୁଲର ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଆସିଥାନ୍ତି । ତାଙ୍କ ଭାଷଣ ଅଧା ହୋଇଛି, ସରଳ କର ଠିଆହୋଇ ପଚାରିଲା "ଓଡଶାର ଦ୍ୱିତୀୟ ଇସ୍ପାତ କାରଖାନା କେବେ ହେବ ?

ହେଡମାଷ୍ଟରଙ୍କ ମୁହଁ ଶୁଖିଗଲା, ସାଇନସ୍ ସାର ଗୁଣବାବୁ ଭରି ରାଗୀ । ତାଙ୍କୁ ପିଲାମାନେ ଗବର୍ ସିଂ ବୋଲି ଡାକୁଥାନ୍ତି । ସେ ରାଗରେ ଥରିବାକୁ ଲାଗିଲେ । ଆସିନ୍ତା କାଲି ସାଇନସ୍ କ୍ଲାସରେ ସରଳ କର ଉପରେ ହେବାକୁ ଯାଉଥିବା ମାଡକଥା ଭବି ଆମ ଆଖିରେ ଲୁହ ଡରେଇ ଆସିଲା, ହେଲେ ସରଳ କର ନିର୍ବିକାର । ତା'ର ଯେମିତି କୋଉଥିକି ଖାତିର ନାହିଁ ।

ସରଳକରର କିନ୍ତୁ କୁକୁରକୁ ଭରିଭୟ । ତାକୁ ପିଲାଦିନେଥରେ କୁକୁର କାମୁଡ ଦେଇଥିବାରୁ ନାହି ଟଳେ ଚଉଦଟା ଇଞ୍ଜେକ୍ସନ ନବାକୁ ପଡଥିଲା । ସେଦିନଠାରୁ କୁକୁର ସାଙ୍ଗରେ ତାର ଅହି-ନକୁଳ ସମ୍ପର୍କ । ଆମ ଘରେ କୁକୁର ଥାଏ ବୋଲି ସେ ଆଜି ପର୍ଯ୍ୟନ୍ତ କେବେ ଆମ ଘରକୁ ଆସିନାହିଁ ।

ଏମିତି କୁକୁରଙ୍କୁ ଡରି ଡରି ସରଳ କର ମାଥ୍ମେଟିକ୍ସରେ ଏମ୍. ଏସ୍ସି: ପାଶ୍ କଲା । ତାପରେ କିନ୍ତୁ ତାକୁ କୁକୁର ସାଙ୍ଗରେ ସମଝୋତା କରିବାକୁ ପଡଲା । ଏମ ଏସ୍ସି. ପରେ ସିଏ କଂପିଟେଟିଭ ଦେଉଥାଏ । ଚାକିରୀ ପାଇଁ ଆବେଦନ କରୁଥାଏ । ଏଇ ସମୟରେ ତା ବାପା ରିଟାଏଡ କରିଗଲେ । ସରଳ କର ଟିଉସନ ଖୋଜି ବୁଲିଲା । ଟିଉସନ ମିଳିଗଲା ସେଠ ହୀରାଲାଲ ଘରେ । ତା ପୁଅ ଝିଅଙ୍କୁ ପଢାଇବ, ମାସକୁ ଦୁଇଶହ ଟଙ୍କା । କିନ୍ତୁ ଅସୁବିଧାଟା ହେଲା ସେଠ

Digitized by srujanika@gmail.com

ପ୍ରୀତିଲାଲ ଘରେ ଦୁଇଟା ଆଲ୍‌ସିସିଆନ କୁକୁର ଥାଆନ୍ତି । ତାଙ୍କୁ ଦେଖି ସରଳ କର ପ୍ରଥମେ ପ୍ରଥମେ ନାରାଜ ହେଲା । ହେଲେ ଘରର ଆର୍ଥିକ ଅବସ୍ଥା, ଏଣେ ଦୁଇଶ ଟଙ୍କାର ଲୋଭରେ ସେ-ରାଜି ହୋଇଗଲା ।

କିଛିଦିନ ପରେ ଭୁବନେଶ୍ୱରରେ ଗୋଟିଏ ନୂଆ କଲେଜ ଖୋଲିଲା । କଲେଜ ନାଁ ତନ୍ତ୍ରମନ୍ତ୍ର କଲେଜ । ସର୍ଟ୍ ଫର୍ମରେ ଟି: ଏମ: କଲେଜ । ବିଶିଷ୍ଟ ତାନ୍ତ୍ରିକ ଗିଲ୍‌ଟି ବାବାଙ୍କ ଅଗଣିତ ଭକ୍ତଙ୍କ ପୃଷ୍ଠପୋଷକତାରେ କଲେଜ ଚାଲିଲା । କଲେଜର ନୀତିନିୟମ ଅନେକ । କଲେଜ କ୍ୟାମ୍ପସ୍ ଭିତରେ ନିଶାଦ୍ରବ୍ୟ ଏମିତିକି, ଗୁ' ପାନ ବି ଖାଇବାକୁ ମନା । କିନ୍ତୁ ଆଶ୍ଚର୍ଯ୍ୟର କଥା, ଅନେକ ମଦୁଆ' ଗଞ୍ଜୋଡ ଏଇ କଲେଜରେ ଅଧ୍ୟାପକ ହୋଇ ଜଏନ କଲେ । ତେଣୁ ଲୋକେ ତାଙ୍କୁ ତ୍ରିନାଥ ମେଳା କଲେଜ ବୋଲି କହିଲେ । ସରଳ କର ବି ଆପ୍ଲାଇ କରିଥିଲା । ସିଏ ବି ଜଏନ୍ କଲା । ପ୍ରଥମେ ପାଞ୍ଚଶହ ଟଙ୍କା ଦରମା । ବର୍ଷେପରେ ୟୁ.ଜି.ସି. ସ୍କେଲ ମିଳିବ । ସରଳ କର ବାପା ମା' ରିଟାଏରମେଣ୍ଟ ପରେ ଗାଁକୁ ପଳେଇଥିଲେ । ସରଳ କର କଲେଜ ପାଖରେ ଗୋଟିଏ ମେସ୍‌ରେ ରହିଲା ।

ଛ' ସାତମାସ ପରେ ସରଳ କର ଦେଖିଲା ଧୀରେ ଧୀରେ ନାମମାତ୍ର କାରଣ ଦେଖାଇ ଲେକ୍‌ଚରରମାନଙ୍କୁ ଛଟେଇ କରି ନୂଆ ଲୋକଙ୍କୁ ଆପଏଣ୍ଟ କରା ହେଉଛି । ତାପରି ପାଞ୍ଚ ଛଅ ଜଣଙ୍କୁ ଛାଡ ଦେଲେ ବାକି ସମସ୍ତ ପ୍ରାୟ ନୂଆ ଲୋକ । ଏକଥା ଭାବିଲା ବେଳେ ତା' ଛାତି ଥରିବାକୁ ଲାଗୁଥାଏ । କିଏ ଜାଣେ ତା ପାଳି କେବେ ପଡ଼ବ ।

ଦିନେ କ'ଣ ଗୋଟିଏ କଲେଜ କାମରେ ସେ ପ୍ରିନ୍‌ସପାଲଙ୍କ ଘରକୁ ଯାଇଥିଲା । ପ୍ରିନ୍‌ସ୍‌ପାଲଙ୍କ ଭରି କୁକୁର ସଉକ୍ ତାଙ୍କ ଘରେ ଆଲ୍‌ସିସିଆନ, ଗ୍ରେହାଉଣ୍ଡ ହୋଇ ତିନି ଚାରୋଟି କୁକୁର ଥାଆନ୍ତି । ଗେଟ୍ ଭିତରେ ପଶୁ ପଶୁ ତାକୁ ଘେରିଗଲେ । ସିଏ ଭୟରେ ଥରିବାକୁ ଲାଗିଲା । ପ୍ରିନସ୍‌ପାଲ ବାହାରିଆସି କହିଲେ "କିହୋ କର ବାବୁ, ଭିତରକୁ ଆସୁନ, ବାହାରେ କ'ଣ କରୁଛ । "ତା ପାଟିରୁ ବାହାରି ପଡ଼ଲା । ସାର୍ କୁକୁର...ମାନେ ଏଇ କୁକୁର ଦେଖୁଥିଲି । "ପ୍ରିନ୍‌ସପାଲ ହସି ହସି କହିଲେ "ଆଚ୍ଛା ଆପଣଙ୍କର ବି କୁକୁର ସଉକ୍ ଅଛି ତାହେଲେ । ଆପଣ କି କୁକୁର ରଖିଛନ୍ତି ?"

ସରଳ କର ଯାଏ କୁଆଡେ । ତା'ର ମନେ ପଡଗଲା ତାକୁ ଯେଉଁ କୁକୁରଟା କାମୁଡ ଥିଲା ସେଇଟା ହେଲା ଗୋଟେ ନେପାଳୀ କୁକୁର । ସେ କହିଲା "ସାର୍ ନେପାଳୀ କୁକୁରଟାଏ । ପ୍ରିନ୍‌ସପାଲ କହିଲେ "ଆଚ୍ଛା କ'ଣ ମାଈ ନା ଅଣ୍ଡିରା ।' ସରଳ କର କହିଲା "ସାର୍ ମାଈ" ।

Digitized by srujanika@gmail.com

କଣ ଛୁଆ ଅଛି ?

"ଯାଉ୍ ନାହିଁ ।"

"ଆଚ୍ଛା ଛୁଆ ହେଲେ ମତେ ଗୋଟିଏ ଦେବେ ।"

ସରଳ କର ଭାବିଥିଲା ପ୍ରିୟନପାଲ କୁକୁରଛୁଆ କଥା ଭୁଲି ଯାଇଥିବେ । କିନ୍ତୁ ଦେଖା ହେଲାମାତ୍ରେ ପ୍ରିନ୍ସିପାଲ ପଚାରନ୍ତି "କଣ ଛୁଆହେଲା ? ମୋ କଥା ମନେଅଛିଟି ?"

ସରଳ କର ଦେଖିଲା ଯଦି ସେ ଗୋଟେ ନେପାଳୀ କୁକୁର ଛୁଆ ଯୋଗାଡ କରି ଦେଇପାରେ ତାହେଲେ ତା ଚାକିରୀ କମ୍ ସେ କମ୍ ଛ' ସାତ ମାସ ପାର୍ମ୍ ରହିଯିବ । ତେଣୁ ସେ ଯାହାକୁ ଦେଖିଲା କୁକୁରଛୁଆ ମାଗିଲା । ଏମିତିକି ସେ ପଇସା ଦେଇ କିଣିବାକୁ ମଧ୍ୟ ରାଜିଥିଲା । ତା କଥା ଶୁଣି ସମସ୍ତେ ହସିଲେ । କିଏ କହିଲେ ଚନ୍ଦ୍ରଗିରି ଯାଇ ଗୋଟିଏ କିଣି ଆଣ, କିଏ କହିଲା ନେପାଳ ପଳା ।

ସ୍କୁ' ଭିତରେ ଗିଲ୍ଟି ବାବାଙ୍କ ଆଶ୍ରମରେ ଟଣ୍ଡଗୋଳ ଲାଗିବାରୁ ଏମାନଙ୍କ ତରମା ମାସେ ହେଲା ମିଳି ନଥାଏ । ଏଣେ ପ୍ରିନ୍ସପାଲ୍ ତାକୁ କୁକୁର ଛୁଆ କଥା ପଚାରି ପଚାରି ବିରକ୍ତ କରିଦେଉଥାନ୍ତି । ସେ ତାଙ୍କୁ କହିଦେଇଥାଏ ଯେ କୁକୁର ଛୁଆ ଦେଇସାରିଲାଣି । ଖାଲି ଆଣିବା ଅଟ୍ଠାକୁ ଆସିଚନ୍ତି ସେ ନେଇ ଆସିବ ।

ସେଦିନ ଛାଡଖାଇ ହୋଇଥାଏ । ତାପର ଦିନ ସେକେଣ୍ଡ ସଟରଡେ ହୋଇଥିବାରୁ ତିନିଦିନ ଛୁଟି ଦେଖି ମେସ୍ ର ଅନ୍ୟ ମେମ୍ବରମାନେ ଘରକୁ ଚାଲି ଯାଇଥାଆନ୍ତି । ତାକୁ ହାତରେ ରୋଷେଇ କରିବାକୁ ପଡ଼ିବ । କାହିଁକି କେଜାଣି ତାକୁ ଆଜି ମାଂସ ଖାଇବାକୁ ଇଚ୍ଛା ହେଲା । ଛାଡଖାଇଟା ମାଂସ ନ ଖାଇଲେ ହବନି । ଚପଲ ଚଳେଇ ସରଳ କର ଚାଲିଲା ମାଂସ ଦୋକାନକୁ ।

ବାଟରେ ଜଣେ ଭଦ୍ରଲୋକଙ୍କ ଗେଟ୍ ପାଖରେ ଗୋଟିଏ ନେପାଳୀ କୁକୁର ଛୁଆ ଟାଏଖେଳୁଥାଏ । ଗେଟ୍ ବାହାରେ ଆଉ ଗୋଟିଏ ଦେଶୀ କୁକୁର ବି ଠିଆ ହୋଇ ନେପାଳୀ କୁକୁରକୁ ଚାହିଁଥାଏ । ଏଇ ସମୟରେ ଘର ଭିତରୁ ଜଣେ ଲୋକ ଦଉଡ ଆସି ନେପାଳୀ କୁକୁରକୁ ଘର ଭିତରକୁ ଟାଣି ଟାଣି ନେଇଗଲେ । ଫେରିଆସି ଦେଶୀ କୁକୁରକୁ ଟେକାମାରି ଘଉଡାଇ ଦେଲେ ।

Digitized by srujanika@gmail.com

ସରଳ କର ଆଗକୁ ଗଲିଲା । ଦୁଇତିନିଟା ଘରପରେ ଦେଖିଲା । ଆଉ ଖୋଟିଏ ଘରେ ଦୁଇଟି ନେପାଳୀଛୁଆ ଖେଳୁଥାନ୍ତି, ଭରି ଗୁଲୁଗୁଲିଆ ହୋଇଛନ୍ତି । ଭାବିଲା ପଗରିବା କାଳେ ବିକିବାକୁ ରାଜି ହେବେ । ଏଇ ସମୟରେ ଘର ଭିତରୁ ଜଣେ ଭଦ୍ରଲୋକ ବାହାରିଆସି ପଚାରିଲେ 'କାହାକୁ ଖୋଜୁଛ କିହୋ ?' ସରଳ କର କହିଲା ''ନାହିଁ ଆଜ୍ଞା, ଏଇ କୁକୁରଛୁଆ ଦେଖୁଥିଲି । ଭଦ୍ରଲୋକଙ୍କ ନାକ ଇଞ୍ଚେ ଉପରକୁ ଉଠିଗଲା । ଗାଲ ଦିଟା ନାଲ୍ ହୋଇଗଲା । ମୁହଁ ଫଣ ଫଣ କରି କୁକୁର ଛୁଆ ଦିଟାଙ୍କୁ ନେଇ ସେ ଘର ଭିତରକୁ ଗଲେଗଲେ ।

ସରଳ କର ଆଗକୁ ଗଲିଲା । ମାଂସ ଦୋକାନରେ ଆଜି ଭରି ଭିଡ଼ । ଲାଇନ୍ ଲାଗିଛି । ସିଏ ଲାଇନ୍‌ରେ ସାମିଲ ହୋଇଗଲା । କିଏ ମାଗୁଥାଏ ଆଗଫଦଆ ଲାଇନରୁ କିଲେ । କିଏ ମାଗୁଥାଏ ପଛଫଡଆ ଗର୍ଦ୍ଦନ କଲିଜା ମିଶାଇ ଦି' କିଲୋ ।

ସିଏ ପକେଟ ଅଣ୍ଡାଳିଲା, ପକେଟରେ ପାଞ୍ଚଟି ଟଙ୍କା ଥାଏ । କେଲେ ମହଲା ଅଛିକି ନାହିଁ କେଜାଣି ?

ତା ପାଳି ପଡ଼ଲା ।

ଦୋକାନି ପଚାରିଲା କେତେ ଦେବି ।''

ସରଳ କର କହିଲା ''ଦି' ଟଙ୍କାର ।''

ଦୋକାନି କହିଲା ''କେତେ, ଦି କିଲୋ ?''

ସରଳ କର ଥଙ୍ଗେଇ ଥଙ୍ଗେଇ କହିଲା ''ନା, ଦି' ଟଙ୍କାର ମାଂସ ଦିଅ ।''

ପାଖରେ ଥିବା ଅନ୍ୟଗରାଖମାନଙ୍କ ଦୃଷ୍ଟି ତା ଆଡକୁ ପଡଲା । ତାକୁ ଲାଗିଲା ଯେମିତି ଏକ୍‌ସରେ ମେସିନ୍ ସବୁ ତାକୁ ଘେରି ଯାଇଛନ୍ତି । ତା ଜାମା, ବାନିଆନ୍ ଭେଦି ତାଙ୍କ ଦୃଷ୍ଟି ତା କଙ୍କାଳରେ ପହଞ୍ଚି ଲାଣି ।

Digitized by srujanika@gmail.com

ଦୋକାନିର ଆଶ୍ଚର୍ଯ୍ୟଚକିତ ପାଟିଟା ତାଜୁ ଲାଗିଲା ଗୋଟିଏ ତୋପର ନଳିପରି । ସତେ ଯେମିତି ଅଉ ଗୋଟିଏ ସେକେଣ୍ଡ ପରେ ଗର୍ଜି ଉଠିବ । ସରଳ କର ମୁଣ୍ଡରେ ଗୋଟିଏ ଫର୍ମୁଲା ପଶିଗଲା ।

ସେ କହିଲା "କୁକୁର ପାଇଁ । କୁକୁର ପାଇଁ ଦି' ଟଙ୍କାର ମାଂସ ଦିଅ । ଛିଅଡା ହେବ ।



Digitized by srujanika@gmail.com



ଲେଖକଙ୍କ ଜନ୍ମ ସେପ୍ଟେମ୍ବର ୧୪ ୧୯୬୧ ମହିଦ୍ୱାରେ। କୁରୁକ୍ଷେତ୍ର ବିଶ୍ୱ ବିଦ୍ୟାଳୟ (ହରିୟାନା)ରୁ ଭାଷା ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କଲାପରେ ଅଧୁନା ଭୁବନେଶ୍ୱରସ୍ଥ ପୂର୍ବାଞ୍ଚଳ ଭାଷା କେନ୍ଦ୍ରରେ ଅଧ୍ୟାପକ ଭାବରେ ଅବସ୍ଥାପିତ ।

ଗପ ଲେଖିବା ଛଡ଼ା ବିଭିନ୍ନ ଖବରକାଗଜ ଓ ପତ୍ରପତ୍ରିକା ପାଇଁ ଫିଚର୍, ଆର୍ଟିକିଲ୍ ଇତ୍ୟାଦି ମଧ୍ୟ ନିୟମିତ ଭାବରେ ଇଂରାଜୀ ଓ ଓଡ଼ିଆରେ ଲେଖନ୍ତି ।

ଜଣେ ସୌଖିନ୍ ଫଟୋ ସାମ୍ବାଦିକ ଭାବରେ ମଧ୍ୟ ଓଡ଼ିଆ ଓ ଇଂରାଜୀ ଭାଷାର ଖବର କାଗଜ ଓ ପତ୍ରିକାମାନଙ୍କ ସହିତ ସଂପୃକ୍ତ ।

ଏଇଟି ଲେଖକଙ୍କର ପ୍ରଥମ ଗଳ୍ପ ସଂକଳନ ।

Digitized by srujanika@gmail.com